# ହୁମା-ବିମଳେଶ୍ୱର



ଶ୍ରୀ ଦୀପ୍ତିରଞ୍ଜନ ଶେଠ

# ହୁମା-ବିମଳେଶ୍ୱର

ଶ୍ରୀ ଦୀପ୍ତିରଞ୍ଜନ ଶେଠ



Huma Bimaleshwar
*Writer & Publisher* : **Shri Diptiranjan Seth**
Babubandh, P.O. : Kalamati, Via, : CA-Chipilima
Dist. : Sambalpur
Pin. : 768 025, (Odisha)



*Printed at* : **Optima offset prints**
Sutahat, Cuttack-753 001, (Odisha)

First Edition : Vijayadashami 2015

Price : Rs. 30/- (Rupees Thirty only)

**ହୁମା-ବିମଳେଶ୍ୱର**

ଲେଖକ ଓ ପ୍ରକାଶକ : ଶ୍ରୀ ଦୀପ୍ତିରଞ୍ଜନ ଶେଠ
ବାବୁବନ୍ଧ, ଡାକଘର- କଳାମାଟି
ଭାୟା- ସି.ଏ. ଚିପିଲିମା, ଜି : ସମ୍ବଲପୁର
ପିନ୍ - ୭୬୮ ୦୨୫, (ଓଡ଼ିଶା)



ପ୍ରଥମ ସଂସ୍କରଣ : ବିଜୟାଦଶମୀ, ୨୦୧୫

ମୁଦ୍ରଣ : ଶ୍ରୀ ତପନ କୁମାର ମହାପାତ୍ର
ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍
ସୂତାହାଟ, କଟକ-୭୫୩ ୦୦୧, (ଓଡ଼ିଶା)

ମୂଲ୍ୟ : ଟ. ୩୦/-
(ତିରିଶ ଟଙ୍କା ମାତ୍ର)

# ମୁଖବନ୍ଧ

ଶ୍ରୀଯୁକ୍ତ ଦୀପ୍ତିରଞ୍ଜନ ଶେଠଙ୍କ ଦ୍ୱାରା ଲିଖିତ 'ହୁମା-ବିମଳେଶ୍ୱର' ପୁସ୍ତକ ସମଗ୍ର ଓଡ଼ିଶାର ସଂସ୍କୃତି ପରଂପରା ପ୍ରେମୀ ପାଠକପାଠିକାଙ୍କ ପାଇଁ ଅତ୍ୟନ୍ତ ଉପାଦେୟ ଓ ଜ୍ଞାନଗର୍ଭକ ମନେହୁଏ । ଷୋଡ଼ଶ ଶତାବ୍ଦୀରୁ ସମ୍ବଲପୁର ଚୌହାଣ ନରପତିଗଣ ପ୍ରଥମେ ବରଗଡ଼ ନିକଟବର୍ତ୍ତୀ ନୂଆଁଗଡ଼, ତତ୍‌ପରେ ସମ୍ବଲପୁର ନିକଟରେ ହୁମାଦେଶ ଏବଂ ପରିଶେଷରେ ସମ୍ବଲପୁରଠାରେ ରାଜଧାନୀ ସ୍ଥାପନ ପୂର୍ବକ ଅଠରଗଡ଼ର ମଉଡ଼ମଣି ବଳିୟାର ସିଂହଦେବଙ୍କ ସମୟରେ ବିଶାଳ ସମ୍ବଲପୁର ସାମ୍ରାଜ୍ୟ (Empire) ସ୍ଥାପନ କରି ଚୌହାଣ ବଂଶର ଗୌରବ ବୃଦ୍ଧି କରିଥିଲେ । ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ ଗଙ୍ଗବଂଶୀୟ କୀର୍ତ୍ତି ହୁମାସ୍ଥିତ ଶିବମନ୍ଦିରର ଜୀର୍ଣ୍ଣୋଦ୍ଧାର ପୂର୍ବକ ମନ୍ଦିରଟିର ମୁଖ୍ୟଦେବ ପ୍ରଭୁ ବିମଳେଶ୍ୱର ଶିବ ଭଗବାନଙ୍କୁ ଅଷ୍ଟଶମ୍ଭୁଙ୍କ ମଧ୍ୟରେ ସର୍ବାଗ୍ରେ ସ୍ଥାପନା କରି ପୂଜାର୍ଚ୍ଚନା ପାଇଁ ଭୂ-ସଂପତ୍ତିର ସ୍ଥାୟୀ ବ୍ୟବସ୍ଥା କରିଥିଲେ ।

ଶ୍ରୀଯୁକ୍ତ ଶେଠ ଏହି ପୁସ୍ତିକାଟି ରଚନା କରିବା ପୂର୍ବରୁ ହୁମା ଶିବମନ୍ଦିର ସମ୍ବନ୍ଧୀୟ ପ୍ରାୟ ସମସ୍ତ ଐତିହାସିକ ତଥ୍ୟ, ଜନଶ୍ରୁତି ଓ କିମ୍ବଦନ୍ତୀ, ଲୋକକଥା ଆଦି ସଂଗ୍ରହ ପୂର୍ବକ ଗଭୀର ଅଧ୍ୟୟନ କରିଛନ୍ତି, ଯା'ଫଳରେ ଏଥିରେ ସନ୍ନିବେଶିତ ତଥ୍ୟାବଳୀ ଜନମାନସକୁ ଆନ୍ଦୋଳିତ କରିବ । ପୂର୍ବରୁ ପ୍ରକାଶିତ ପୁସ୍ତକ ଓ ଲେଖା ସବୁରେ ହୁମା ମନ୍ଦିର ଉପରେ ଏତେ ଗବେଷଣା ପୂର୍ଣ୍ଣ ବିଶଦ ବିବରଣୀ ମିଳେ ନାହିଁ ।

ଏହି କ୍ଷୁଦ୍ର ପୁସ୍ତିକାଟି ରଚନା କରି ଶ୍ରୀଯୁକ୍ତ ଶେଠ ତାଙ୍କର ଅସାଧାରଣ ଧୀଶକ୍ତିର ପରିଚୟ ଯେ ପ୍ରଦାନ କରିଛନ୍ତି ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଏହି ପୁସ୍ତିକାର ସୁପ୍ରସାରଣ କାମନା କରୁଛି ।

ଭୁବନେଶ୍ୱର
ତା : ୨୩ । ୦୧ । ୨୦୧୪
(ବୀର ସୁରେନ୍ଦ୍ରସାଏ ଜୟନ୍ତୀ)

ଶଶାଙ୍କ ଶେଖର ପଣ୍ଡା

# କୃତଜ୍ଞତା ଜ୍ଞାପନ

ସୁପ୍ରସିଦ୍ଧ "ହୁମା-ମନ୍ଦିର" ସଂପର୍କରେ ପୂର୍ବରୁ 'ମୁକୁର' ଓ 'ଉତ୍କଳ-ସାହିତ୍ୟ'ରେ ଗୋଟିଏ ଲେଖାଏଁ ପ୍ରବନ୍ଧ ପ୍ରକାଶିତ ହୋଇଛି । ପ୍ରଥମ ପ୍ରବନ୍ଧଟି ହେଉଛି 'ହୁମାଯାତ୍ରା' ଓ ଏହାର ଲେଖକ ହେଉଛନ୍ତି କବି ବ୍ରଜମୋହନ ପଣ୍ଡା । ଯାହା 'ମୁକୁର' ପତ୍ରିକାର ଷଷ୍ଠଭାଗ, ୪ର୍ଥ ସଂଖ୍ୟା (ଜୁଲାଇ ୧୯୧୧)ରେ ପ୍ରକାଶିତ । 'ଉତ୍କଳ-ସାହିତ୍ୟ'ରେ ଯେଉଁ ପ୍ରବନ୍ଧ ପ୍ରକାଶ ପାଇଥିଲା ତାହାର ଶୀର୍ଷକ ଥିଲା "ହୁମା" (ଉତ୍କଳ ସାହିତ୍ୟ ୩୧/୯-୧୦, ପୌଷ-ମାଘ, ଡିସେମ୍ବର ୧୯୨୭ ଓ ଜାନୁୟାରୀ ୧୯୨୮) ଓ ଏହାର ଲେଖକ ହେଉଛନ୍ତି ଶ୍ରୀ ନାରାୟଣ ପ୍ରସାଦ ମିଶ୍ର । ଏହି ଉଭୟ ପ୍ରବନ୍ଧରେ ଆମେ ଦେଖିବାକୁ ପାଉଁ ସେ କାଳର 'ହୁମା ମନ୍ଦିର'ର ସଂକ୍ଷିପ୍ତ ଇତିହାସ । ଏହା ବାହାରେ ସମକାଳର ଅନ୍ୟାନ୍ୟ ପତ୍ର ପତ୍ରିକା, ସମ୍ବାଦପତ୍ରରେ ଓ ପୁସ୍ତକ-ପୁସ୍ତିକାକାରରେ ହୁମା ମନ୍ଦିରର ଇତିହାସ ପ୍ରକାଶ ପାଇଥିବା ସମ୍ଭବ । 'ହୁମା ମନ୍ଦିର' ସଂପର୍କରେ ଯେଉଁ ସବୁ ପ୍ରବନ୍ଧ ଏବଂ ପୁସ୍ତିକା ପ୍ରକାଶିତ ହୋଇଛି, ସେଗୁଡ଼ିକ ନିଶ୍ଚୟ ଏକ ସାହସିକ ପଦକ୍ଷେପ ମାତ୍ର; କିନ୍ତୁ ଯଥେଷ୍ଟ ନୁହେଁ । ମନ୍ଦିର ସଂପର୍କୀୟ ଗବେଷଣା ବ୍ୟାପକ ହେଉ, ଇତିହାସ ଗବେଷକମାନେ ଏ ସଂପର୍କରେ ଯଥା ସମ୍ଭବ ସଚେ଼ତନ ହେବା ଆବଶ୍ୟକ ।

"ହୁମା-ବିମଳେଶ୍ୱରଙ୍କ" ଉପରେ ବହି ଲେଖିବା ପାଇଁ ମୁଁ ବରଗାଁ ଆର୍. ଆଇ. ଅଫିସ୍‌ରେ ଥିବା ସରକାରୀ ରେକର୍ଡ଼ପତ୍ରର ସାହାର୍ଯ୍ୟ ନେଇଛି । ପପଙ୍ଗା ଗ୍ରାମର ସ୍ୱର୍ଗୀୟ ଦିବାକର ହୋତାଙ୍କ ବଂଶଧର ତଥା ପରିବାରର ମୁଖ୍ୟ ଶ୍ରୀଯୁକ୍ତ ସୀତାରାମ ହୋତା (ବର୍ତ୍ତମାନ ଦିବଂଗତ)ଙ୍କ ଠାରୁ ତାଙ୍କ ବଂଶାବଳୀ ଓ ଇତିହାସ ସଂପର୍କରେ ବିଶେଷ ଅବଗତ ହୋଇଛି । ତେଣୁ ତାଙ୍କର ସ୍ୱର୍ଗୀୟ ଆତ୍ମାପ୍ରତି ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଉଛି । ଏହି କ୍ଷୁଦ୍ର ପୁସ୍ତକଟି ଲେଖିବା ବେଳେ ଯେଉଁମାନେ ମତେ ତାଙ୍କର ସୁଚିନ୍ତିତ ମୂଲ୍ୟବାନ୍ ପରାମର୍ଶ ଦେଇଥିଲେ, ସେମାନେ ହେଲେ ସ୍ୱର୍ଗୀୟ ଶ୍ରୀବଲ୍ଲଭ ପାଣିଗ୍ରାହୀ, (ସାଂସଦ ଓ ବିଶିଷ୍ଟ ଗ୍ରନ୍ଥକାର), ଶ୍ରୀଯୁକ୍ତ ସାଲେଗ୍ରାମ ହୋତା (ପପଙ୍ଗା), ଶ୍ରୀଯୁକ୍ତ ରାମକୃଷ୍ଣ ଷଡ଼ଙ୍ଗୀ (ହୁମା), ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାଶ

(ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ, ରାଣା ପ୍ରତାପ ହାଇସ୍କୁଲ୍, ବରଗଡ଼), ବିଶିଷ୍ଟ ଗବେଷକ ଅଧ୍ୟାପକ ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶ, ସାମ୍ବାଦିକ ଓ ସାହିତ୍ୟିକ ଶିବପ୍ରସାଦ ତ୍ରିପାଠୀ, ଐତିହାସିକ ଶ୍ରୀଯୁକ୍ତ ସଦାନନ୍ଦ ଅଗ୍ରୱାଲ, ପଣ୍ଡିତ ଗୌରଚନ୍ଦ୍ର ପାଣିଗ୍ରାହୀ (ହଳଦୀ), ଅଧ୍ୟାପକ ଡ଼. ରଘୁନାଥ ମେହେର ଏବଂ ପଣ୍ଡିତ ନୀଳାମ୍ବର ହୋତା (ସଂଖଳା) ପ୍ରମୁଖ ବନ୍ଧୁବର୍ଗ । ସମସ୍ତଙ୍କୁ ମୋ' ହୃଦୟର ଗଭୀରତମ ପ୍ରଦେଶରୁ ସଭକ୍ତି ନମସ୍କାର କରୁଛି । ସେହିପରି 'ଓଡ଼ିଶା ରାଜ୍ୟ ଅଭିଲେଖାଗାର', ଭୁବନେଶ୍ୱର (Orissa State Archives, Bhubaneswar)ରେ ଥିବା 'ସମ୍ବଲପୁର ହିତୈଷିଣୀ' ଓ କଟକସ୍ଥିତ 'ଉତ୍କଳ ସାହିତ୍ୟ ସମାଜ'ର ଉତ୍କଳ-ଗୌରବ ମଧୁସୂଦନ ପାଠାଗାରରେ ସଂରକ୍ଷିତ ଥିବା 'ଉତ୍କଳସାହିତ୍ୟ', 'ଉତ୍କଳଦର୍ପଣ' ଏବଂ 'ଉତ୍କଳ ସେବକ'ର ପ୍ରାଚୀନ ସଂଖ୍ୟାଗୁଡ଼ିକ ଦେଖିବାର ସୁଯୋଗ ପାଇଥିଲି । ତେଣୁ ଏହାର କର୍ମକର୍ତ୍ତାଙ୍କ ଠାରେ ଗଭୀର କୃତଜ୍ଞ ।

"ହୁମା-ବିମଳେଶ୍ୱର" ପୁସ୍ତକର ପାଣ୍ଡୁଲିପି ପାଠକରି ସୁଲେଖକ, ଐତିହାସିକ, ସମ୍ବଲପୁରୀ ଭାଷା-ସାହିତ୍ୟର ବିଶିଷ୍ଟ ଗବେଷକ, ସଂଗ୍ରାହକ ଓ ସଂପାଦକ ଡକ୍ଟର ଶଶାଙ୍କ ଶେଖର ପଣ୍ଡା ନିଜର ଉଚ୍ଚ ଅଭିମତ ପ୍ରଦାନ ପୂର୍ବକ 'ମୁଖବନ୍ଧ'ଟିଏ ଲେଖି ଦେଇଛନ୍ତି । ତାଙ୍କୁ ନମସ୍କାର କରୁଛି । ଏହି ପୁସ୍ତକର ମୁଦ୍ରଣ ଦାୟିତ୍ୱକୁ ସୁଚାରୁ ରୂପେ ନିର୍ବାହ କରିଛନ୍ତି କଟକ ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟର୍ସ୍‌ର ପରିଚାଳକ ଶ୍ରୀମାନ୍ ତପନ କୁମାର ମହାପାତ୍ର । ଏହି ଶୁଭ ଅବସରରେ ତାଙ୍କୁ ମଧ୍ୟ ପ୍ରଣାମ ଜଣାଉଛି ।

ମୁଁ ଇତିହାସର ଏକନିଷ୍ଠ ଗବେଷକ ନୁହେଁ କିମ୍ବା ଇତିହାସ ଗବେଷଣା ଦିଗରେ ମୋର ସାମାନ୍ୟ ଦକ୍ଷତା ମଧ୍ୟ ନାହିଁ । କିନ୍ତୁ ଉତ୍ସାହ ସହକାରେ ସଂସ୍କୃତି ପ୍ରିୟ ହୋଇ ଲେଖନୀ ଚାଳନା କରିବାରେ ମୁଁ ଆନନ୍ଦ ପାଏ । ମୋ' ଲିଖିତ "ହୁମା-ବିମଳେଶ୍ୱର" ପୁସ୍ତକଟି ସମଗ୍ର ଉତ୍କଳ ଖଣ୍ଡରେ ପାଠକୀୟ ଆଦର ପାଇବ ବୋଲି ବିଶ୍ୱାସ । ପରିଶେଷରେ ଉତ୍କଳର ଐତିହାସିକ, ଗବେଷକ, ଲେଖକ ଓ ପାଠକ ପାଠିକାମାନଙ୍କୁ କହିରଖେ ଯେ, ଏହି ବହିରେ କିଛି ତ୍ରୁଟି ଥିଲେ ମତେ କ୍ଷମା ଦେବେ ବୋଲି ଆଶା କରେଁ ।

ବାବୁବନ୍ଧ — ବିନୀତ

ତା. ୧୮ । ୯ । ୨୦୧୫ — ଶ୍ରୀ ଦୀପ୍ତିରଞ୍ଜନ ଶେଠ

(ନୂଆଁଖାଇ, ଶୁକ୍ରବାର)

# ହୁମା-ବିମଳେଶ୍ୱର

'ଉତ୍କଳ'-ଉତ୍କୃଷ୍ଟ କଳାର ଦେଶ ବୋଲି ଏହାକୁ 'ଉତ୍କଳ' ବା 'ଓଡ଼ିଶା-ଦେଶ' କୁହାଯାଏ । ଉତ୍କଳ ଦେଶ କେତେ ମହାନ୍, କେତେ ପବିତ୍ର, ତାର ଅତୀତ ଇତିହାସ କେତେ ଗୌରବମୟ, ତାହା ଥରେ ଚିନ୍ତାକଲେ ଆବାକ୍ ହେବାକୁ ପଡ଼େ । ଏଠାରେ କେତେ ନଦୀ, ପର୍ବତ, ପ୍ରପାତ, ଦେବାଳୟ ଅବସ୍ଥିତ । ଏହି ଉତ୍କଳ ଭୂମିରେ କେତେ କବି, ଲେଖକ, ଭାବୁକ, ସାଧୁ-ସନ୍ଥ-ମହାତ୍ମା ଜନ୍ମଲାଭ କରି ଧନ୍ୟ ହୋଇଛନ୍ତି । ପୂର୍ବ ଓଡ଼ିଶାରେ ଉତ୍କଳର ଆରାଧ-ଦେବତା ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁ, ମହାଜ୍ୟୋର୍ତିଲିଙ୍ଗ ଶ୍ରୀ ଲିଙ୍ଗରାଜ, ଠିକ୍ ସେହିପରି ପଶ୍ଚିମ ଓଡ଼ିଶାରେ ହରିଶଙ୍କର, ନୃସିଂହନାଥ, ମା' ସମଲେଶ୍ୱରୀ, ଅର୍ଦ୍ଦାଗ୍ରାମସ୍ଥିତ ଶ୍ରୀଦୁର୍ଗା ଦଧିବାମନଙ୍କ ସମେତ ହୁମାର ସୁପ୍ରସିଦ୍ଧ 'ବିମଳେଶ୍ୱର ମହାଦେବ'ଙ୍କ ସହିତ ଅଷ୍ଟଶମ୍ଭୁ ଶୋଭାପାଉଛନ୍ତି । ସର୍ବୋପରି·ସମଗ୍ର ଉତ୍କଳ-ଖଣ୍ଡରେ ଦେବ-ଦେବୀଙ୍କର ପୀଠଗୁଡ଼ିକ ଅବସ୍ଥିତ । ସେଗୁଡ଼ିକ ଆମର ସମଗ୍ର ମାନବ ସମାଜ ପାଇଁ 'ତୀର୍ଥସ୍ଥଳ' ଭାବରେ ପରିଚିତ । ପଶ୍ଚିମ ଓଡ଼ିଶାର 'ତୀର୍ଥସ୍ଥଳୀ'ମାନଙ୍କ ମଧ୍ୟରେ 'ହୁମା ଶିବ ମନ୍ଦିର' ଗୋଟିଏ ପ୍ରଧାନ ତୀର୍ଥକ୍ଷେତ୍ର ଭାବରେ ସୁପରିଚିତ । ଏହି 'ହୁମା' ଆଗେ ପାଟଣା ରାଜାଙ୍କ ଅଧୀନରେ ଥିଲା । ଏ ସଂପର୍କରେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଲେଖିଛନ୍ତି :

''ବଳରାମ ଦେବ ଅଙ୍ଗନଦୀର ଉତ୍ତରକୂଳରୁ ମହାନଦୀର ଦକ୍ଷିଣକୂଳ ପର୍ଯ୍ୟନ୍ତ ଭାଗ ପାଇଥିଲେ । ଏହି ଭୂଖଣ୍ଡ ''ହୁମା ପ୍ରଗଣା'' ନାମରେ କଥିତ ହେଉଥିଲା । ହୁମା ଗ୍ରାମରେ ପ୍ରତିଷ୍ଠିତ ପ୍ରସିଦ୍ଧ ବିମଳେଶ୍ୱର ଶିବ ମନ୍ଦିର ହୁମା ପ୍ରଗଣାର ଅନ୍ତର୍ଭୁକ୍ତ । ପାଟଣା ରାଜ୍ୟର ସୀମା ହୁମା ପର୍ଯ୍ୟନ୍ତ ବର୍ଦ୍ଧିତ ହୋଇଥିଲା । ବଳରାମଦେବଙ୍କ ରାଜ୍ୟର ପ୍ରଥମ ନାମ ''ହୁମା-ରାଜ୍ୟ'' ଥିଲା । ''ହୁମା'' ଶବ୍ଦ ''ଉମା'' ଶବ୍ଦର ଅପଭ୍ରଂଶ ।''

(ଚୌହାଣ ବୀର ସୁରେନ୍ଦ୍ର ସାଏ– ୧୯୫୮, ପୃ.୧୦)

'ହୁମା'–ମଧ୍ୟଯୁଗୀୟ ହୁମାଦେଶ । 'ହୁମା'–ସମ୍ବଲପୁର ଜିଲ୍ଲାର ମାନଚିତ୍ରରେ ଗୋଟିଏ କ୍ଷୁଦ୍ରଗ୍ରାମ ହେଲେ ବି' ବହୁଭାବରେ ପରିଚିତ, ସର୍ବଜନ ବିଦିତ ।

ଏହି ଗ୍ରାମଟି ଧମାଥାନା ଇଲାକାରେ ଅବସ୍ଥିତ । 'ହୁମା' ଗ୍ରାମର ଐତିହାସିକ ମୂଲ୍ୟ ଆଜି ସମଗ୍ର ଭାରତବର୍ଷରେ କାହିଁରେ କ'ଣ । ସମ୍ବଲପୁର ସହରଠାରୁ ଦକ୍ଷିଣ ଦିଗକୁ ୧୪ ମାଇଲ୍ ଅଥବା ୨୩ କିଲୋମିଟର ରାସ୍ତା ଅତିକ୍ରମ କଲାପରେ ଏହି ପ୍ରସିଦ୍ଧ ଶୈବପୀଠ 'ହୁମାମନ୍ଦିର' ପଡ଼େ । ମହାନଦୀ ଓ ଧୂଳିଯୋର୍‌ର ମିଳନ ସ୍ଥଳରେ ୨୦୦ଫୁଟ୍ ଦୈର୍ଘ୍ୟ ଓ ୧୨୦ଫୁଟ୍ ପ୍ରସ୍ଥ ଆୟତକ୍ଷେତ୍ର ଉପରେ ନିର୍ମିତ । ଏହା ଉତ୍ତର-ପଶ୍ଚିମକୁ ୮୦ ରୁ ୮୫ ଡ଼ିଗ୍ରୀ କୋଣ ମଧ୍ୟରେ ଢ଼ଳି ରହିଛି । ଏଠାରେ ଥିବା କପିଳେଶ୍ବର, ଭୁବନେଶ୍ୱର, ଭୈରବୀ, ଗରୁଡ଼ଖମ୍ବ, ତୁଳସୀଚଉରା, ପ୍ରବେଶ ପଥର ପ୍ରଥମ ତୋରଣ ମଧ୍ୟ ବକ୍ର । ସେହିପରି ନୂତନ ଭାବେ ନିର୍ମିତ ହୋଇଥିବା ଜଗନ୍ନାଥ ମନ୍ଦିର ଓ ଶ୍ରୀ ହନୁମାନଙ୍କ ବିଗ୍ରହ ମଧ୍ୟ ସାମାନ୍ୟ ଢ଼ଳି ରହିଛି । ହୁମା ଶିବ ମନ୍ଦିର – ସମଗ୍ର ପୃଥିବୀରେ ଗୋଟିଏ ବକ୍ରମନ୍ଦିର ଭାବରେ ପରିଚିତ । ଏହାକୁ କେହି କେହି ଇଟାଲିରେ ଥିବା 'ପିସା ଟାୱାର୍' ସହିତ ତୁଳନା କରିଥାନ୍ତି । ଏହା ବକ୍ରମନ୍ଦିର ହେଲେମଧ୍ୟ ପଦ୍ମାକୃତି ଚୂଡ଼ାଟି ଭୂମି ସହ ସମାନ୍ତର । ଏହିଠାରେ ଶ୍ରୀ ଶ୍ରୀ ବିମଳେଶ୍ୱର ମହାଦେବଙ୍କ ଆବିର୍ଭାବ ହୋଇଥିଲା । ସମ୍ବଲପୁରର ଅଷ୍ଟଶମ୍ଭୁରୁ ସେ ହେଉଛନ୍ତି ଆଦ୍ୟଶମ୍ଭୁ । ୫୪ ଡିସ୍‌ମିଲ୍ (ସର୍ବ-ସାଧାରଣ ଖାତାନମ୍ବର ୧୮୨ରୁ) ପରିମିତ ଜମି ଉପରେ ଅବସ୍ଥିତ ଶ୍ରୀ ଶ୍ରୀ ବିମଳେଶ୍ୱର ମହାଦେବଙ୍କ ବିଜେସ୍ଥଳୀ ।

'ହୁମା ମନ୍ଦିର'ର ବକ୍ରତା ସମଗ୍ର ପୃଥିବୀରେ ଗୋଟିଏ ଅନନ୍ୟ ଓ ଅନବଦ୍ୟ । ଏହି ମନ୍ଦିରକୁ ଦେଖିବାପାଇଁ ଓଡ଼ିଶା ସମେତ ଭାରତର ବିଭିନ୍ନ ପ୍ରଦେଶରୁ ଭକ୍ତ, ପର୍ଯ୍ୟଟକ, ଐତିହାସିକ ତଥା ଗବେଷକମାନେ ଏଠାକୁ ଆସିଥାନ୍ତି । ଶ୍ରୀଶ୍ରୀ ବିମଳେଶ୍ୱର ବାବାଙ୍କୁ ପୁଷ୍ପାର୍ଘ୍ୟ ଦେଇ ଭକ୍ତି ସହକାରେ ପୂଜା କରନ୍ତି । ଅତଏବ 'ହୁମା ମନ୍ଦିର' ପଶ୍ଚିମ ଓଡ଼ିଶାର ତୀର୍ଥକ୍ଷେତ୍ର ମଧ୍ୟରେ ଗୋଟିଏ ପ୍ରମୁଖ ଦର୍ଶନୀୟ ଓ ପର୍ଯ୍ୟଟନ କେନ୍ଦ୍ର ଅଟେ ।

ଓଡ଼ିଶାର ଗଜପତି ତୃତୀୟ ଅନଙ୍ଗ ଭୀମଦେବ ଶାପ-ମୁକ୍ତ ହେବାଲାଗି ଗଙ୍ଗା ଗଲାବେଳେ ଏଠାରେ ମହାନଦୀ କୂଳରେ ଏହା ନିର୍ମାଣ କରିଥିଲେ ବୋଲି କିମ୍ବଦନ୍ତୀ କହେ । କିନ୍ତୁ ଶାପମୁକ୍ତ ହେବାପରେ ଏହା ନିର୍ମାଣ କରାଇ ଥିବା ଅଧିକ ଯୁକ୍ତି ସଙ୍ଗତ । କାରଣ– ପ୍ରବାଦ ଅଛି ଉତ୍କଳର ଗଙ୍ଗବଂଶର ନୃପତି ତୃତୀୟ ଅନଙ୍ଗ ଭୀମଦେବ ଏକଦା କ୍ଷୟରୋଗରେ ଆକ୍ରାନ୍ତ ହେବାଫଳରେ, ରୋଗମୁକ୍ତ ହୋଇ ନ ପାରିବାରୁ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶରଣାପନ୍ନ

ହୋଇଥିଲେ । ମହାପ୍ରଭୁ ଶ୍ରୀ ଜଗନ୍ନାଥ ସ୍ୱପ୍ନରେ ରାଜାଙ୍କୁ କହିଲେ ଶିବ-ମନ୍ଦିର ଗୁଡ଼ିକ ନିର୍ମାଣ କରି ଶିବଙ୍କ ଆରାଧନା କଲେ ରୋଗମୁକ୍ତ ହେବ । ତେଣୁ ଉତ୍କଳ ଗଙ୍ଗା-ମହାନଦୀ କୂଳେ କୂଳେ ଉପର ଭାଗକୁ ଅନେକ ଶିବ-ମନ୍ଦିର ନିର୍ମିତ ହୋଇଥିବାର ଜଣାଯାଏ । ମହାରାଜା ଏକଦା ୧୦୮ ଗୋଟି ଶିବ ମନ୍ଦିର ନିର୍ମାଣ କରିଥିବାର ଜନଶ୍ରୁତି ଅଛି । ସେଥି ମଧ୍ୟରେ "ଚରଦା"ରେ ଥିବା ଶିବ ମନ୍ଦିର ହେଉଛି ଶେଷ ଶିବମନ୍ଦିର । ତେଣୁ ରାଜା ତୃତୀୟ ଅନଙ୍ଗ ଭୀମଦେବ ମହାନଦୀର ଅବବାହିକାରେ ଅଳ୍ପ ଅଳ୍ପ ବ୍ୟବଧାନରେ ଶିବମନ୍ଦିର ଗୁଡ଼ିକ ନିର୍ମାଣ କରାଇଥିଲେ । ତାଙ୍କର ଏହି ମନ୍ଦିର ଗୁଡ଼ିକ ନଦୀ- କୂଳବର୍ତ୍ତୀ ସ୍ଥାନମାନଙ୍କରେ ନିର୍ମିତ ହୋଇ ସୋନପୁର ରାଜ୍ୟର ଶେଷ ସୀମା ଏବଂ ସମ୍ବଲପୁର ରାଜ୍ୟର ଆରମ୍ଭ ସୀମାରେଖା "ରହିଲା" ନାମକ ସ୍ଥାନ ପର୍ଯ୍ୟନ୍ତ ବ୍ୟାପ୍ତହୋଇ ଏହିଠାରେ ଶେଷ ହୋଇଛି । ଏହାକୁ ଜନଶ୍ରୁତି ଅନୁସାରେ "ପାପକ୍ଷୟଘାଟ" ବୋଲି କହିଥାନ୍ତି । ଲୋକ କିମ୍ବଦନ୍ତୀ ଅନୁସାରେ ରାଜାଙ୍କ କ୍ଷୟରୋଗ ଏହି ସ୍ଥାନରେ ରହିଲା (ଅର୍ଥାତ୍ ରାଜା ରୋଗମୁକ୍ତ ହେଲେ) । ସେହି ଅନୁସାରେ ଏହି ସ୍ଥାନକୁ "ରୋହିଲାଖଣ୍ଡ" ବା "ରହିଲା" ନାମରେ ଅଭିହିତ କରାଯାଏ । ଏହି ସ୍ଥାନର ମହିମା ସଂପର୍କରେ ସ୍ୱଭାବକବି ଗଙ୍ଗାଧର ମେହେର ତାଙ୍କର "କବିତା-କଲ୍ଲୋଳ" କାବ୍ୟାନ୍ତର୍ଗତ "ବେଦବ୍ୟାସ" କବିତାରେ ଲେଖିଛନ୍ତି :

"ଚିତ୍ରୋତ୍ପଳା ପୂତନୀର ପୂତୋଜଳ,
ଯହିଁ ରାଜେ ରାମ ଶ୍ରୀପଦ-କମଳ ।
ପାପକ୍ଷୟ-କର ପାପ-କ୍ଷୟ-ଘାଟ,
ମୁକ୍ତ ପାପ ଯହିଁ ଉତ୍କଳ-ସମ୍ରାଟ୍ ।
ପାପ ଅପସରି ସେଠାରେ ରହିଲା,
ସାକ୍ଷ୍ୟ ଦେବାପାଇଁ ରହିଛି "ରହିଲା" ।"
(କବିତା କଲ୍ଲୋଳ- ପ୍ରଥମସଂସ୍କରଣ-୧୯୧୨)

ଏହାପରେ ବିଶିଷ୍ଟ ଐତିହାସିକ, ଗବେଷକ, କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ତାଙ୍କର ଐତିହାସିକ କାବ୍ୟ 'ସମ୍ବଲ ମନସା'ରେ ଉଲ୍ଲେଖକରି କହିଛନ୍ତି:

"ଆରଣ୍ୟ ବ୍ରାହ୍ମଣ କୁଳର ନେତା ।
ହୁମା ମହାଦେବ ମନ୍ଦିର ହୋତା ।।
ତସ୍ମା ପଟ୍ଟା ପାଇ ଯା ପଦତଳେ ।

ବସନ୍ତି ଆଠଶ ବର୍ଷୁ 'ନିଶ୍ଚଳେ' ।।''
(ସମ୍ବଲ ମନସା–୧୯୨୩, ପୃ.୨)

ସ୍ୱପ୍ନେଶ୍ୱର ଦାଶ ତାଙ୍କର ଫୁଟ୍‌ନୋଟରେ ଲେଖିଛନ୍ତି ଏହିପରି

(୧) ଓଡ଼ିଶା ମହାରାଜା ଗଜପତି ହୁମାର ବିମଳେଶ୍ୱର ମନ୍ଦିର ସ୍ଥାପନ କରି ଉକ୍ତ ମହାଦେବଙ୍କ ଭକ୍ତ ଦିବାକର ହୋତାଙ୍କୁ ମନ୍ଦିରର ହୋତା କରାଇଥିଲେ।

(୨) 'ହୁମା' ବିମଳେଶ୍ୱର ମନ୍ଦିରର ସ୍ଥାପୟିତା ମହାରାଜା ବଳିଆର ସିଂହ ବୋଲି 'ସମ୍ବଲପୁର ଗେଜେଟିୟର୍'ରେ ଉଲ୍ଲେଖଅଛି; କିନ୍ତୁ ଉକ୍ତ ମନ୍ଦିର ୮୦୦ ବର୍ଷରୁ ଅଧିକ କାଳହେଲା ସ୍ଥାପିତ ହୋଇଥିବା ଏବଂ ତାହା ଓଡ଼ିଶା ମହାରାଜା ଅନଙ୍ଗ ଭୀମଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା ତଥ୍ୟ ଗୋଟିଏ ତାମ୍ରଫଳକରୁ ଜଣାପଡ଼େ । ପପଙ୍ଗାର ହୋତାଙ୍କ ପୂଜା ଆଗେ ହୋଇ, ତାଙ୍କର ଛଡ଼ା ଫୁଲମାଳ ନେଇ ମହାଦେବଙ୍କୁ ପୂଜା କରାଯାଏ । ଏହି ଦୃଶ୍ୟ ଶିବରାତ୍ରୀରେ ହୁଏ ।

ଏଠାରେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଗୋଟିଏ ତାମ୍ରଫଳକ ବୋଲି ଯାହା ଉଲ୍ଲେଖ କରିଛନ୍ତି ତାହା ପୂର୍ବେ ପପଙ୍ଗା ହୋତାଙ୍କ ଘରେ ସଂରକ୍ଷିତ ଥିଲା । ତେବେ ଉପରୋକ୍ତ ତଥ୍ୟରୁ ଏହା ଜଣାପଡ଼େ ଯେ, ହୁମାର ଶିବ ମନ୍ଦିରଟି ମହାରାଜା ତୃତୀୟ ଅନଙ୍ଗ ଭୀମଦେବଙ୍କ ଦ୍ୱାରା ସମ୍ଭବତଃ ୧୧୯୦ ରୁ ୧୨୦୦ ଖ୍ରୀ: ମଧ୍ୟରେ ନିର୍ମିତ ହୋଇଥିବ । ଯେଉଁଦିନ ମନ୍ଦିର ନିର୍ମାଣ ସରିବା କଥା, ତା' ପୂର୍ବଦିନ ରାତିରେ ଏକ ପ୍ରଚଣ୍ଡ ଶବ୍ଦ ହେଲା । ସତେ ଯେମିତି ''ଭୂମିକମ୍ପ'' ହୋଇଛି । ପରଦିନ ସକାଳେ ମନ୍ଦିର ବକ୍ର ହୋଇଛି । କାରିଗରକୁ ବିମଳେଶ୍ୱର ବାବା ସ୍ୱପ୍ନଦେଲେ– ''ମୁଁ ପାତାଳଗାମୀ ହୋଇଛି । ଭୟ କରନା; ଏ ସ୍ଥାନଟି ଖୁବ୍ ପବିତ୍ର ।'' ଏହା ଏକ ଭୂତାତ୍ତ୍ୱିକ ବିସ୍ମୟ । ପୂର୍ବେ ମହାନଦୀ ତଟ ଘନବନରେ ପୂର୍ଣ୍ଣ ଥିଲା । ପପଙ୍ଗା ଗ୍ରାମର ଦିବାକର ହୋତାଙ୍କ ଗାଈ ଶିବଲିଙ୍ଗ ଉପରେ କ୍ଷୀର ଦେବା । ଶ୍ରୀ ଦିବାକର ହୋତାଙ୍କୁ ଭଗବାନ୍ ସ୍ୱପ୍ନ ଦେଇ କହିଲେ : ''ମୁଁ ଏଠାରେ ଆବିର୍ଭୂତ ହୋଇଛି, ମୋତେ ଆଣି ପୂଜାର୍ଚ୍ଚନା କର ।'' କ୍ଷୀର ଦେଲାବେଳେ ଗାଈ ହମ୍ବାରଡ଼ି କରିଥିବାରୁ ଏହାର ନାମ 'ହମ୍ବା' ଓ ପରବର୍ତ୍ତୀ କାଳରେ ଅପଭ୍ରଂଶ ହୋଇ ''ହୁମା'' ହୋଇଥିବାର ସମ୍ଭବ । ପପଙ୍ଗା ଗାଈବୋଲି ଯେଉଁମାନେ କହିଥାନ୍ତି ପ୍ରକୃତରେ ତାହା ପପଙ୍ଗା ନୁହେଁ କୁମ୍ଭାରୀ ଗ୍ରାମର ଗାଈ । କାରଣ

ସେତେବେଳେ ହୋତା ପରିବାର କୁମ୍ଭାରୀ ଗ୍ରାମରେ ହିଁ ବାସ କରୁଥିଲେ ବୋଲି ଶ୍ରୀଯୁକ୍ତ ସାଲେଗ୍ରାମ ହୋତା ତାଙ୍କର ଗୋଟିଏ ସାକ୍ଷାତ୍‌କାରରେ କୁହନ୍ତି । ଅତଏବ ପପଙ୍ଗା କି କୁମ୍ଭାରୀ ହୁଅନ୍ତୁ ସେହି ଗୋମାତାଙ୍କୁ ଚିରକାଳ ସ୍ମରଣ ରଖିବା ସକାଶେ ଏବଂ ପରବର୍ତ୍ତୀ ଗବେଷକ ଓ ଦର୍ଶକମାନଙ୍କ ଜାଣିବାପାଇଁ ଗୋଟିଏ ଗାଈମୂର୍ତ୍ତି ଦର୍ଶନର ଅଭାବ ଅନୁଭୂତ ହେବାରୁ ନୂତନ ରୂପରେ ଗାଈ ମୂର୍ତ୍ତିଟିଏ ସ୍ଥାପନା କରିଯାଇଛି । ହୁମା ମନ୍ଦିର ପ୍ରାଙ୍ଗଣରେ ପ୍ରତିଷ୍ଠା କରାଯାଇଥିବା ମୂର୍ତ୍ତିଟି ଭୁବନେଶ୍ୱରରୁ ଅଣାଯାଇ ହୋତା ପରିବାର ଓ ହୁମା ଗ୍ରାମବାସୀଙ୍କ ମିଳିତ ଆନୁକୂଲ୍ୟରେ ବିଗତ ତା. ୨୦।୦୧।୨୦୦୩ ମସିହାରେ ପ୍ରତିଷ୍ଠା କରାଯାଇଥିଲା । ମୂର୍ତ୍ତିତଳେ ଲେଖାଅଛି :

"ଶ୍ରୀ ଶ୍ରୀ ବିମଳେଶ୍ୱର ପଦ ପଙ୍କଜ ଭ୍ରମର ଦିବାକର ହୋତା ଓ ସମସ୍ତ ପୂର୍ବ-ପୁରୁଷଙ୍କ ଅପାର କରୁଣାରୁ ସ୍ୱାମୀ ଭବାନୀ ଶଙ୍କର ହୋତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମର୍ପିତ ।

ନୁରାବତୀ ହୋତା
(ପପଙ୍ଗା)
ତା. ୨୦ । ୧ । ୦୩ ଇଂ.

ପରବର୍ତ୍ତୀ ସମୟରେ ଅର୍ଥାତ୍ ଏହା ଇତିହାସର ମଧ୍ୟଯୁଗୀୟ ହୁମାଦେଶ । ସମ୍ବଲପୁର ପଲ୍ଲୀ ଅଞ୍ଚଳର ବାଳିକା ଓ ଯୁବତୀମାନଙ୍କ ହୁମୋଗୀତରେ ଶୁଣିବାକୁ ମିଳେ :

"ହୁମୋ ନନନନ  ଦଶ ବୋଇଲିରେ
ହୁମୋ ନନନନ ଦଶ ବୋଇଲିରେ
ନଖାଉଁ ନପିଉଁ  ଗୁଆ ପନସରେ
ନଯାଉ ତୁମ୍ଭର ଦେଶ,
ବୋଇଲିରେ, ନଯାଉ ତୁମ୍ଭର ଦେଶ ।
ହୁମୋର ଗରିଆ ବୋଇଲିରେ, ହୁମୋର ଗରିଆ
ମୋ ଗରିଆକୁ କେ ମାଇଲା
ରକତ ଝୋଲିଆରେ, ରକତ ଝୋଲିଆ ।"

(ସ୍ୱର୍ଗତ ପଣ୍ଡିତ ନୀଳମାଧବ ପାଣିଗ୍ରାହୀଙ୍କଠାରୁ ସଂଗୃହୀତ)

ଏହି ହୁମୋଖେଳ ବା ହୁମୋଗୀତରେ ବାଳିକା ଓ ଯୁବତୀମାନେ ଦୁଇଟି ଦଳରେ ବିଭକ୍ତ ହୋଇ ପରସ୍ପରଠାରୁ କିଛିଦୂର ଛଡ଼ା ଧାଡ଼ିବାନ୍ଧି ଠିଆ ହୁଅନ୍ତି ।

ପ୍ରଥମେ ଦଳେ ଗୀତ ବୋଲି ବୋଲି ଅପରଦଳ ଆଡ଼କୁ ଅଗ୍ରସର ହୋଇ ନିଜ ସ୍ଥାନକୁ ଲେଉଟି ଯାଆନ୍ତି । ତା'ପରେ ଅପରଦଳ ଗୀତ ବୋଲି ବୋଲି ସେହିପରି କରନ୍ତି । ଏହା ମୁଖ୍ୟତଃ ପ୍ରତିଯୋଗିତାମୂଳକ ଖେଳ ଓ ଗୀତ । ଏହି ଖେଳ ଓ ଗୀତର ଅପୂର୍ବ ମାଦକତା ରହିଛି ।

ଇତିହାସ ଅନୁସାରେ ଚୌହାଣ ବଂଶର ପ୍ରଥମ ରାଜା ବଳରାମ ଦେବଙ୍କ ଉତ୍ତରାଧିକାରୀ ବଳିୟାର ସିଂହ ବର୍ତ୍ତମାନର ମନ୍ଦିର ତଥା ମୁଖଶାଳାଟି ୧୬୭୦ ମସିହାରେ ନିର୍ମାଣ କରାଇଥିଲେ । ବିଶିଷ୍ଟ ଐତିହାସିକ ଶିବ ପ୍ରସାଦ ଦାଶ ତାଙ୍କର "ସମ୍ବଲପୁର ଇତିହାସ" ପୁସ୍ତକରେ ଉଲ୍ଲେଖ କରି ଲେଖିଛନ୍ତି : "ରାଜା ବଳୀୟାର ସିଂହଦେବଙ୍କ ରାଜତ୍ୱରେ ବର୍ତ୍ତମାନ ଥିବା ହୁମାମନ୍ଦିର ନିର୍ମିତ ହୋଇଥିଲା । ହୁମା ସହିତ ଛଅଖଣ୍ଡ ଗ୍ରାମ ଦେଉଳର ଖଞ୍ଜା ବିଧାନ ନିମନ୍ତେ ମାଫି ରହିଅଛି । ଏହି ଦାନ ଅତି ପ୍ରାଚୀନ । ଲୋକେ କହନ୍ତି, ପ୍ରଥମ ଚୌହାଣ ରାଜା ବଳରାମ ଦେବ ଏହି ଗ୍ରାମମାନ ମାଫି ଦେଇଥିଲେ ।"

(ସମ୍ବଲପୁର ଇତିହାସ–୧୯୬୨, ପୃ.୩୫୭)

ଶିବ ପ୍ରସାଦ ଦାଶଙ୍କ 'ସମ୍ବଲପୁର ଇତିହାସ' ବହୁ ଗବେଷକ ପଢ଼ିଥିବା ଭଳି ମନେହୁଏ ନାହିଁ । କାରଣ– ବର୍ତ୍ତମାନର ମନ୍ଦିର ସଂପର୍କରେ ସେ କହିଛନ୍ତି । ମୂଳମନ୍ଦିର ବା ପ୍ରଥମ ମନ୍ଦିର ବଳିୟାର ସିଂହ ନିର୍ମାଣ କରିଥିବାର କଥା ଐତିହାସିକ ଦାଶ ଆଦୌ କହିନାହାନ୍ତି । ଏଠାରେ ଛଅଖଣ୍ଡ ଗ୍ରାମ ବୋଲି ଶିବପ୍ରସାଦ ଦାଶ ଉଲ୍ଲେଖ କରିଛନ୍ତି, କିନ୍ତୁ କିମ୍ବଦନ୍ତୀ ଅନୁସାରେ ତାହା ପ୍ରକୃତରେ ସାତଖଣ୍ଡ ଗ୍ରାମ । ସେହି ସାତଖଣ୍ଡ ଗ୍ରାମ ହେଉଛି :

୧ । Huma : (ହୁମା)
୨ । Grindolapali : (ଗିନ୍ଦଳାପାଲି)
୩ । Bhairopali : (ଭୈରୋପାଲି)
୪ । Gaidharpali : (ଗଏଧରପାଲି)
୫ । Mahalei : (ମହଲେ)
୬ । Dhatukpali : (ଧାତୁକପାଲି)
୭ । Bolbunge : (ବୋଲବୁଙ୍ଗା)

ମନ୍ଦିର ପାଇଁ ରାଜା ବଳିୟାର ସିଂ ଦାନ କରିଥିବା ଜମି କାଳେ କେହି ନେଇଯିବ, ସେଥିପାଇଁ ଶାପ ଥିଲା ଯେ, ଯିଏ ଜମି ନେବ ତାର ବାପା ଗଧ ଓ ମା' ଘୁଷୁରୀ ହୋଇଯିବ । ଦୋଳମଣ୍ଡପର ପଛକୁ ଦୁଇଟି ଶିଳା-

ଗଧଶିଳା ଓ ଘୁଷୁରୀଶିଳା ଅଛି ।

ସମ୍ବଲପୁରରେ ଚୌହାଣ ରାଜାମାନେ ଦୀର୍ଘବର୍ଷ ପର୍ଯ୍ୟନ୍ତ ଶାସନ କରିଥିଲେ । ସେହି ଚୌହାଣ ରାଜାମାନଙ୍କ ମଧ୍ୟରେ ମହାରାଜା ଛତ୍ରସାଏ ହେଉଛନ୍ତି ଜଣେ ଯଥାର୍ଥ ଶାସକ ଓ କୀର୍ତ୍ତିମାନ ମହାରାଜା । ମହାରାଜା ଛତ୍ରସାଏ (୧୬୯୯-୧୭୪୨) ଶାସନ କରୁଥିବା ସମୟରେ ସମ୍ବଲପୁରର ବହୁବିଧ ଉନ୍ନତି ସାଧିତ ହୋଇଥିଲା । ଏକଦା ମରହଟ୍ଟା ରାଜା ରଘୁବୀର ଭୋଁସଲା ସମ୍ବଲପୁର ଆକ୍ରମଣ କରିଥିଲେ ଓ ଛତ୍ରସାଏଙ୍କ ଠାରୁ ପରାଜିତ ହୋଇ ଲଜ୍ଜିତ ମୁଖରେ ସ୍ୱଦେଶକୁ ଫେରିଯାଇଥିଲେ । ସମ୍ଭବତଃ ମରହଟ୍ଟା ମାନଙ୍କର ଏହା ହେଉଛି ସମ୍ବଲପୁରକୁ ପ୍ରଥମ ଆକ୍ରମଣ । ଛତ୍ରସାଏଙ୍କ ରାଜସଭାରେ ସଭାକବି ଓ ରାଜବୈଦ୍ୟ ଥିଲେ ପଣ୍ଡିତ ଗୋପୀନାଥ ଷଡ଼ଙ୍ଗୀ । ପଣ୍ଡିତ ଷଡ଼ଙ୍ଗୀ ମହାଶୟ ବହୁଶାସ୍ତ୍ରରେ ପାରଦର୍ଶୀ ଥିଲେ । ସେ ''ଚିକିତ୍ସା-ମଞ୍ଜରୀ'' ନାମରେ ଖଣ୍ଡିଏ ଆୟୁର୍ବେଦ ଗ୍ରନ୍ଥ ସଂକଳନ କରିଥିଲେ । ''ଚିକିତ୍ସା-ମଞ୍ଜରୀ'' ଗ୍ରନ୍ଥଟି ବହୁବର୍ଷ ପର୍ଯ୍ୟନ୍ତ ତାଳପତ୍ର ପୋଥି ଆକାରରେ ପଡ଼ି ରହିଥିଲା । ପରେ ୧୯୨୨ ମସିହାରେ ଏହା ପ୍ରଥମକରି ମୁଦ୍ରିତ ପୁସ୍ତକ ରୂପରେ ପ୍ରକାଶିତ ହୋଇ ଲୋକଲୋଚନକୁ ଆସିଥିଲା । (ସମ୍ବଲପୁର ହିତୈଷିଣୀ- ୩୪/୪ : ତା. ୪.୧.୧୯୨୨)। ସେ ନିଜ ଅଞ୍ଚଳ ବ୍ୟତୀତ ପଡ଼ୋଶୀ ରାଜ୍ୟମାନଙ୍କ ସହିତ ତାଙ୍କର ସୁସଂପର୍କ ସ୍ଥାପିତ ହୋଇଥିଲା । ତନ୍ମଧ୍ୟରେ ତାଳଚେର ରାଜାଙ୍କ ସହିତ ତାଙ୍କର ସଂପର୍କ ହୋଇଥିଲା । ତାଳଚେ଼ର (ଭୀମନଗରୀ)ର ତତ୍‌କାଳୀନ ରାଜା ଗୋବିନ୍ଦ ଚରଣ ବୀରବର ହରିଚ଼ନ୍ଦନ ରାଉତରାୟ ସାଥୋଡ଼ା ଦଳ ବେହେରା ମହାପାତ୍ର ମହାରାଜା ଛତ୍ରସାଏଙ୍କ ନିକଟକୁ ଖଣ୍ଡେ ପତ୍ର ପଠାଇଥିଲେ । ଉକ୍ତ ପତ୍ରରେ ସମ୍ବଲପୁରର ଚୌହାଣ ରାଜାମାନଙ୍କ ଗୌରବର ପରିଚ଼ୟ ମିଳିଥାଏ । ଉକ୍ତ ପତ୍ରଟି ହେଉଛି :

''ସ୍ୱସ୍ତିଶ୍ରୀ ସମସ୍ତ ପ୍ରଶସ୍ତ ସହିତେଷୁ ଶ୍ରୀ ଗଙ୍ଗବଂଶକୁ ବିଦ୍ରୋହ ଧବଳ ବଇରି ଦୁର୍ଜ୍ଜୟ ସଙ୍ଗମଗଡ଼ ଶନିଶ୍ଚର ଅନିର୍ବାରଣ ଦଳ ସନ୍ନିବାରଣ ସିଦ୍ଧି ବୁଡ଼ନ୍ତା ଗଡ଼ ଉଦ୍ଧାରଣ ଧୀରଗଣ୍ଡେ ଗନ୍ଧବାରଣ ବୀରମଣ୍ଡଳୀଙ୍କ ମସ୍ତକେ ତ୍ରିଶୂଳ ଶ୍ରୀ ରଣରାଙ୍କସ ଶ୍ରୀ ବିମଳେଶ୍ୱର ଦେବତା ଶ୍ରୀ ସମଲାଈ ଦେବୀ ଶରଣ ଶ୍ରୀ ପାଟଣେଶ୍ୱରୀ ଦେବୀଙ୍କ ବରପ୍ରସାଦ ଶ୍ରୀ ସମ୍ବଲପୁର ଶୁଭସ୍ଥାନ ଅଧିପତି ଶ୍ରୀମତ୍ ଛତ୍ରସାଏ ମହାରାଜାଙ୍କୁ . . .

ସ୍ୱସ୍ତିଶ୍ରୀ ପ୍ରବଳ ପ୍ରତାପୋଦ୍ଦିତ ପରତାପଦାନ ସମ୍ପନ୍ନ ମହାରାଜାଧିରାଜ

ଶ୍ରୀ ଭୀମ ନଗରୀ ଶୁଭସ୍ଥାନ ଅଧିପତି ଶ୍ରୀ ରାମଚଣ୍ଡୀ ଦେବୀଙ୍କ ବରପ୍ରସାଦ ବୀରାଧିବୀରବର ଶ୍ରୀ ୧୦୮ ଶ୍ରୀ ରାଜା ଗୋବିନ୍ଦ ଚରଣ ବୀରବର ହରିଚନ୍ଦନ ରାଉତରାୟଙ୍କର. . . ଯେ ଯାହାର ବିଧିଚିଟାଉ । ସାହାଣ ଭଣ୍ଡାର ଦଳ ପରିବାର ସମସ୍ତ କ୍ଷେମକୁଶଳ । ଏ ଜାଣି ଆପଣଙ୍କର ସମସ୍ତ ପାଟ ସାହାଣ ଭଣ୍ଡାର ଦଳ ପରିବାର ଶ୍ରୀଅଙ୍ଗ ରାଇଜ କ୍ଷେମକୁଶଳ କଥାମାନ ଲେଖା ଦେବା ହୋଇବ । ଶୁଣି ଚିତ୍ତରେ ଆନନ୍ଦ ହୋଇବ । ସବୁଦିନେ ସମ୍ବଲପୁର ଭୀମନଗରୀ ଏକା ରାଇଜେ ଏକା ଘରେ ଏକାଧର୍ମେ ଏକାକର୍ମେ ସମ୍ବଲପୁର ଭଲେ ଭୀମନଗରୀ ଭଲ ଭୀମନଗରୀ ଭଲେ ସମ୍ବଲପୁର ଭଲ । ଭୀମ ନଗରୀର ଯେ ଶତ୍ରୁ ସମ୍ବଲପୁରର ସେ ଶତ୍ରୁ । ଭୀମନଗରୀର ଯେ ମିତ୍ର ସମ୍ବଲପୁରର ସେ ମିତ୍ର । ଆଜ ବୋଲି ନୁହଇ ସଦାସର୍ବଦା ପୁରୁଷାନୁକ୍ରମେ ଆମ୍ଭ ଦୁଇ ରାଇଜ ମଧରେ ମାଂସ ଅଚ୍ଛେଦ୍ୟ ଅଭେଦ୍ୟ ହୋଇ ଦିନ ଯାଉଛି ।

ଏ ନିମନ୍ତେ ଏ ଅଙ୍କର ଏତେଦିନ ସରିକି ଏ ଲେଖା ପଠାଗଲା କି ।''

ଶ୍ରୀହସ୍ତ ସ୍ୱାକ୍ଷର

ରାଜା ଗୋବିନ୍ଦ ଚରଣ ବୀର ହରିଚନ୍ଦନ

ରାଉତରାୟ ସାଆନ୍ତା ଦଳବେହେରା ମହାପାତ୍ର ।''

(ଚୌହାଣ ବୀର ସୁରେନ୍ଦ୍ର ସାଏ– ୧୯୫୮, ପୃ. ୩୫–୩୬)

ସମ୍ବଲପୁର ରାଜାଙ୍କୁ ଲେଖିଥିବା ଉପରୋକ୍ତ ପତ୍ରଖଣ୍ଡିକ ତାଳଚେର ରାଜାଙ୍କ ରାଜବାଟୀ ସନ୍ନିକଟ ଲାଇବ୍ରେରୀରୁ ସର୍ବପ୍ରଥମେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କଦ୍ୱାରା ସଂଗ୍ରହ ପୂର୍ବକ ତାଙ୍କର ''ଚୌହାଣ ବୀର ସୁରେନ୍ଦ୍ର ସାଏ'' (୧୯୫୮, ପୃ. ୩୫–୩୬) ପୁସ୍ତକରେ ସଂକଳିତ ହୋଇଥିଲା । ତାଳଚେର ମହାରାଜାଙ୍କ ଲିଖିତ ପତ୍ରରେ ''ବିମଳେଶ୍ୱର''ଶବ୍ଦର ବ୍ୟବହାର ମଧ ଦେଖିବାକୁ ମିଳିଥାଏ ।

କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ତାଙ୍କର 'ସମ୍ବଲ-ମନସା' କାବ୍ୟରେ ଲେଖିଛନ୍ତି :

''ସମ୍ବଲ ସନ୍ତାନ ହୋଇ ।
ହୁମା ଶିବରାତ୍ରି ଦେଖି ଯେ ନାହିଁ ଯେ ।
ତା'ଠାରୁ ଅଭାଗା କାହିଁ ? ସୁଜନେ ସେ ।।''

(ସମ୍ବଲ ମନସା– ୧୯୨୩, ପୃ.୨୦)

ଉପରୋକ୍ତ ପଦରେ କବି ହୁମା ଶିବରାତ୍ରୀ କଥା ବର୍ଣ୍ଣନା କରିଛନ୍ତି । ସମ୍ବଲପୁରର ଅଷ୍ଟଶମ୍ଭୁ ମାନଙ୍କ ମଧ୍ୟରେ ହୁମାର ଶ୍ରୀ ଶ୍ରୀ ବିମଳେଶ୍ୱର ବାବା ସର୍ବପ୍ରଧାନ ଓ ସର୍ବ ପୁରାତନ । ତାଙ୍କର ପ୍ରତ୍ୟକ୍ଷ ମହିମା ଅଛି । ଦୁର୍ଲ୍ଲଭ-ମାନବ ଜନ୍ମଲାଭ କରି ପ୍ରତ୍ୟେକ ମଣିଷ ଥରେ ଥରେ ହୁମାର ବିମଳେଶ୍ୱର ବାବାଙ୍କ ସାକ୍ଷାତ୍ ଦର୍ଶନ କରିବା କଥା କବି ଏଠାରେ ସୂଚନା ଦେଇଛନ୍ତି । ନହେଲେ ତାଙ୍କ ମତରେ ମଣିଷ ଜନ୍ମର କୌଣସି ସାର୍ଥକତା ହିଁ ନାହିଁ । ଆଜିକାଲି 'ହୁମା ଶିବରାତ୍ରୀ' ଉତ୍ସବରେ ସ୍ତ୍ରୀ-ପୁରୁଷ, ପୁଅ-ଝିଅ, ବୃଦ୍ଧ-ବୃଦ୍ଧା ଯେପରି ଉଭୟ ସମାନ ଭାବରେ ଯୋଗଦାନ କରୁଛନ୍ତି, କିନ୍ତୁ ପୂର୍ବ-କାଳରେ ସେପରି ନଥିଲା । ଆଗେ ପୁରୁଷ ମାନଙ୍କ ଅପେକ୍ଷା ସ୍ତ୍ରୀଲୋକ-ମାନେ ଅଧିକ ସଂଖ୍ୟାରେ ଯୋଗଦାନ କରୁଥିଲେ । ଏହାର କାରଣ ଏହି ଯେ, ପୂର୍ବେ କଥା ଥିଲା 'ହୁମାମେଳା' ସରିବା ପରେ ହିଁ ପଶ୍ଚିମ-ଓଡ଼ିଶାରେ, ମୁଖ୍ୟତଃ ସମ୍ବଲପୁର ଅଞ୍ଚଳରେ ପୁଅ-ଝିଅମାନଙ୍କ ପାଇଁ ପାତ୍ର-ପାତ୍ରୀ ସ୍ଥିର କରାଯାଉ ଥିଲା । ଏହାର ତାତ୍ପର୍ଯ୍ୟ ଏହି ଯେ, ହୁମାମେଳାରେ ବିବାହର ସକଳ ସାମଗ୍ରୀ କିଣାଯାଇ ତା'ପରେ ବିବାହ ଲଗ୍ନ ସ୍ଥିରୀକୃତ ହେଉଥିଲା । ଏଇ ପରମ୍ପରା ହୁମା ଅଞ୍ଚଳର ବହୁ ବୟସ୍କବ୍ୟକ୍ତି ମାନଙ୍କଠାରୁ ଶୁଣିବାକୁ ମିଳେ । ପୂର୍ବେ 'ହୁମାମେଳା'ରେ ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀ-ଲୋକମାନେ ଅଧିକ ସଂଖ୍ୟାରେ ଯୋଗଦାନ କରୁଥିବାର ସମ୍ବାଦକୁ ଦେବଗଡ଼ରୁ ପ୍ରକାଶିତ ହେଉଥିବା ସାପ୍ତାହିକ ସମ୍ବାଦପତ୍ର "ସମ୍ବଲପୁର ହିତୈଷିଣୀ"ରେ ଏକ ବିଜ୍ଞାପନ ଦେଖିବାକୁ ମିଳେ । ବିଜ୍ଞାପନଟି ହେଉଛି ଏହିପରି :

ସାପ୍ତାହିକ ସମାଚାର

ସମ୍ବଲପୁର–ସମ୍ବାଦ ।

"ଚଳିତବର୍ଷ ଧମା (ହୁମା)ଗ୍ରାମସ୍ଥିତ ବିଖ୍ୟାତ୍ ମନ୍ଦିରରେ ଚିର-ପ୍ରଚଳିତ ପ୍ରଥାନୁସାରେ ଶିବରାତ୍ରୀ ଉପଲକ୍ଷ୍ୟରେ ଉତ୍ସବ ହୋଇଥିଲା । ସହସ୍ରାଧିକ ଦର୍ଶକ ଉପସ୍ଥିତ ହୋଇଥିଲେ । ପାଲା, ନାଟ, ତମସା ଇତ୍ୟାଦି ହୋଇଥିଲା । ଶୁଣାଯାଏ ଦର୍ଶକମାନଙ୍କ ମଧ୍ୟରୁ ସ୍ତ୍ରୀ ସଂଖ୍ୟା ବେଶୀ ଥିଲା । ଉକ୍ତ ଶତାଧିକ ଦର୍ଶକ ଗୋଶାଜ, ଅଶ୍ୱସାଜ ଇତ୍ୟାଦିରେ ଯାଇଥିଲେ। ବର୍ତ୍ତମାନ ଅନେକ ଦର୍ଶକ ବାହୁଡ଼ି ଆସିଅଛନ୍ତି।"

(ସମ୍ବଲପୁର ହିତୈଷିଣୀ–୧୩/୪୫ : ତା ୧୯–୩–୧୯୦୨, ବୁଧବାର)

ପରବର୍ତ୍ତୀ ସମୟରେ ହୁମାମେଳାକୁ ଅଧିକ ସଂଖ୍ୟାରେ ଭକ୍ତମାନଙ୍କର ଯିବା ଆସିବା ପାଇଁ ସେ ସମୟରେ ବହୁ ବଦାନ୍ୟ ବ୍ୟକ୍ତିଙ୍କ ସହଯୋଗରେ 'ଲରି' (ମଟରଗାଡ଼ି)ର ବ୍ୟବସ୍ଥା କରାଯାଇଥିବାର ଖବର ମଧ୍ୟ ମିଳିଥାଏ । ଏ ସଂପର୍କରେ ସମ୍ବଲପୁରରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର ''ଉତ୍କଳ-ସେବକ'' (୧୦ । ୧୬ : ତା ୧୫–୦୨–୧୯୨୩, ଗୁରୁବାର) ଘୋଷଣା କରି କହିଛି : ''ଶିବରାତ୍ରୀ ସମୟରେ ହୁମାକୁ ଯିବାପାଇଁ ଲରିର ସୁବିଧା କରାଯାଇଥିଲା ।''

ହୁମାର ବିମଳେଶ୍ୱର ବାବା ହେଉଛନ୍ତି ଅଷ୍ଟଶମ୍ଭୁମାନଙ୍କ ମଧ୍ୟରେ ଅଗ୍ରପୂଜ୍ୟ ଦେବତା । ସମ୍ବଲପୁରର ଅଷ୍ଟଶମ୍ଭୁ ହେଲେ :

(୧) ହୁମା – ବିମଳେଶ୍ୱର ବାବା
(୨) ଅମ୍ବାଭନା – କେଦାରନାଥ
(୩) ଦେଓଗାଁ – ବିଶ୍ୱନାଥ ବାବା
(୪) ଗାଇସମା – ବାଲୁଙ୍କେଶ୍ୱର ବାବା
(୫) ମାନେଶ୍ୱର – ମାନଧାତା ବାବା
(୬) ସୋର୍ଣ୍ଣା – ସ୍ୱପ୍ନେଶ୍ୱର ବାବା
(୭) ସରଣ୍ଡା – ବିଶ୍ୱେଶ୍ୱର ବାବା
(୮) ନୀଳଜୀ – ନୀଳ କଣ୍ଠେଶ୍ୱର

## ପୂଜାବିଧି :

ହୁମାମନ୍ଦିରରେ ଅଧିଷ୍ଠିତ ଶ୍ରୀ ଶ୍ରୀ ବିମଳେଶ୍ୱରଙ୍କ ପୂଜାର୍ଚ୍ଚନା ପ୍ରଥମେ ପପଙ୍ଗା ଗ୍ରାମର ହୋତା ପରିବାର କରୁଥିଲେ । ପରବର୍ତ୍ତୀ କାଳରେ ତାହା ପରିବର୍ତ୍ତିତ ହୋଇଛି । ବିମଳେଶ୍ୱର ବାବାଙ୍କ ପୂଜାର୍ଚ୍ଚନା କରିବାପାଇଁ ଏଠାରେ ପୂଜକ ନିଯୁକ୍ତ ହୋଇଅଛନ୍ତି । ସେମାନେ ସମସ୍ତେ ''ପୂଜାରୀ'' ସଂଜ୍ଞାଧାରୀ ଅଟନ୍ତି । ସମ୍ଭବତଃ, ଏହି ମନ୍ଦିର ପୂଜାରୀମାନେ ମୂଳପୂଜକ 'ଭଙ୍ଗଦେଓ'ଙ୍କ ବଂଶଧର ଥିବାର ଜଣାଯାଏ । ଶିବ ହେଉଛନ୍ତି 'ଅଣ–ଆର୍ଯ୍ୟ ସଂସ୍କୃତିର ଦେବତା' । ତେଣୁ ବ୍ରାହ୍ମଣମାନେ ଶିବ ମନ୍ଦିରରେ ପୂଜା କରନ୍ତିନାହିଁ । ଆହୁରି ମଧ୍ୟ ଓଡ଼ିଆ ଭାଗବତକାର ଭକ୍ତକବି ମହାତ୍ମା ଜଗନ୍ନାଥ ଦାସ କହିଛନ୍ତି– ''ଶୈବ ଶାକ୍ତିଙ୍କ କ୍ଷୁଦ୍ର ଦୀକ୍ଷା, କେବେହେଁ ନ କରିବ ଶିକ୍ଷା ।'' ଶିବଙ୍କ

ପାଦୁକା ଜଳକୁ ଶିରରେ ମଖାଯାଏ । ମୁଖରେ ପାନ କରାଯାଏ ନାହିଁ । ଠିକ୍ ସେହିପରି ବ୍ରହ୍ମାଙ୍କ ପାଦୁକା ଜଳକୁ ଶିରରେ ମଖାଯାଏ ନାହିଁ ମୁଖରେ ତାହାକୁ ପାନ କରାଯାଇଥାଏ । ଏ ସଂପର୍କରେ ସଂସ୍କୃତରେ ମଧ୍ୟ ସୂକ୍ତି ଅଛି ।

ପ୍ରତିବର୍ଷ ଫାଲ୍‌ଗୁନ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ ମହାଶିବରାତ୍ରୀରେ ପୂଜା ସମୟରେ ଭଗବାନ ଶ୍ରୀବିମଳେଶ୍ୱର ଶିବଙ୍କ ପ୍ରଥମ ଦର୍ଶନ ପାଇଥିବା ପପଙ୍ଗା ଗ୍ରାମର ହୋତା ବଂଶଧରଙ୍କୁ ନିମନ୍ତ୍ରଣ କରାଯାଇ ଠାକୁରଙ୍କ ଷୋହଳପୂଜା କରାଯାଏ । ଏହି ପୂଜାର ବିଧି ମୁତାବକ ଠାକୁରଙ୍କଠାରେ ଷୋହଳହାଣ୍ଡି ଖେଚୁଡ଼ି ଭୋଗ ଲଗାଯାଏ । ଏହି ଶିବରାତ୍ରି ଦିନ ଆଉଏକ ମହାନ୍ ପରମ୍ପରା ରହିଛି । ଏଠାରେ ସାତପ୍ରହରକୁ ଲିଙ୍ଗାଭରଣ ପୂଜା ହୋଇଥାଏ । ଏହି ସାତ-ପ୍ରକାରର ପୂଜା ମଧ୍ୟରେ ପ୍ରଥମ ପୂଜା ହେଉଛି ରାଜା ଅନଙ୍ଗ ଭୀମଦେବଙ୍କର, ଦ୍ୱିତୀୟରେ ବଳରାମ ଦେବ, ତୃତୀୟରେ ବୀର ବଳିୟାର ସିଂହ, ଚତୁର୍ଥରେ ବରେଣ୍ୟ ହୋତା ବଂଶ, ପଞ୍ଚମରେ ଭଣ୍ଡାର ପୂଜା, ଷଷ୍ଠରେ ଗଡ଼ତିଆ ଭାର ଓ ସପ୍ତମରେ ହୁମାର ଭକ୍ତମାନଙ୍କର । ଏଠାରେ ଗର୍ତ୍ତ ଭିତରେ ପାତାଳି ଲିଙ୍ଗ ପୂଜା ପାଆନ୍ତି । ବିସ୍ମୟ ଏହି ଯେ, ଗ୍ରୀଷ୍ମକାଳରେ ଏହି ଗର୍ତ୍ତଟି ଜଳରେ ପରିପୂର୍ଣ୍ଣ ଥିବାବେଳେ, ବର୍ଷାଋତୁରେ ଶୁଖିଲା ରହିଥାଏ । ମନ୍ଦିର ଭିତରୁ ହୋତା ବଂଶଧର ଧ୍ୱଜା ଓ ମହାଦୀପ ଧରି ବେଢ଼ା ପରିକ୍ରମା କରିବା ପୂର୍ବକ ମନ୍ଦିରର ଚୂଡ଼ା ଦେଶରେ ଧ୍ୱଜା ବନ୍ଧା ହୁଏ । ଏହି ଶୈବପୀଠର ମନ୍ଦିର ପଛପଟେ ମଚ୍ଛୀନ୍ଦ୍ର ଘାଟ ଅବସ୍ଥିତ । ଜନଶ୍ରୁତି କହେ ଏକଦା ଶ୍ରୀବିମଳେଶ୍ୱର ଶିବ– ପାର୍ବତୀମାତାଙ୍କ ସହିତ ନିକାଞ୍ଚନରେ ବସି ଯୋଗ-ବିଦ୍ୟାର ସୃଷ୍ଟି ରହସ୍ୟ ସଂପର୍କରେ ଶୁଣାଉଥିଲେ । ମାତା ପାର୍ବତୀ ଶୁଣିବା ଅବସ୍ଥାରେ ଶୋଇପଡ଼ିଲେ । ଫଳରେ ମଚ୍ଛିନ୍ଦ୍ରନାଥ ମୀନ ଅବତାର ଧାରଣ କରି ଅବଶିଷ୍ଟ ଯୋଗ ବିଦ୍ୟାକଥା ଶୁଣିପାରିଲେ । ଏହି ବିଷୟଟି ଭଗବାନ୍ ଶିବ ଜାଣିପାରିଥିଲେ । ତେଣୁ ମଚ୍ଛିନ୍ଦ୍ରନାଥଙ୍କୁ ଭଗବାନ ଶିବଙ୍କ ଆଉ ଏକ ଅବତାର ରୂପେ ଗ୍ରହଣ କରାଯାଇଥାଏ । ମଚ୍ଛିନ୍ଦ୍ରନାଥଙ୍କୁ ମୀନନାଥ ମଧ୍ୟ ସମ୍ବୋଧନ କରାଯାଇଥାଏ । ଏହି ମଚ୍ଛିନ୍ଦ୍ରନାଥଙ୍କ ନାମାନୁସାରେ ଏହି ଘାଟର ନାମକରଣ ହୋଇଥିବା ସମ୍ଭବ । ଶିବରାତ୍ରିର ପରଦିନ ସକାଳେ ଏହି 'ମଚ୍ଛିନ୍ଦ୍ରଘାଟ'ରେ ହୋତା ବଂଶର ସମସ୍ତ ବ୍ୟକ୍ତି (କେବଳ ପୁରୁଷ ଓ ପିଲା) ସ୍ନାନ ସମାପନ ପୂର୍ବକ ଏକତ୍ରିତ ହୁଅନ୍ତି । ପୂର୍ବ–ପୁରୁଷଙ୍କ ନାମାନୁସାରେ ଜଣ ଜଣଙ୍କର ନାମ ଉଚ୍ଚାରଣ କରି ପୂଜା ପାଠ ସହିତ ଜଳ

ଅର୍ପଣ କରାଯାଏ । ଏହାକୁ 'ତିଳତର୍ପଣ' ପରମ୍ପରା କୁହାଯାଇଥାଏ । ଏହି ପରମ୍ପରାଟି ବହୁ ଦିନରୁ ରହିଆସିଛି । ଇଂରେଜ ଶାସନ କାଳରେ ପୂର୍ବେ କଥା ଥିଲା ଏହି 'ମଚ୍ଛିନ୍ଦ୍ର ଘାଟ'ରୁ ଉତ୍ତର ଦିଗକୁ ତିନି କିଲୋମିଟର ଓ ଦକ୍ଷିଣ ଦିଗକୁ ତିନି କିଲୋମିଟର ପର୍ଯ୍ୟନ୍ତ କୌଣସି ଲୋକେ ମାଛ ଧରିପାରିବେ ନାହିଁ । ଏହାକୁ ସେତେବେଳେ 'Prohibited Area' ବା 'ନିଷିଦ୍ଧାଞ୍ଚଳ' ବୋଲି ଘୋଷଣା କରାଯାଇଥିଲା । ଏଠାରେ ଇଷତ୍ ତାମ୍ର-ବର୍ଣ୍ଣର ଅସଂଖ୍ୟ 'କୁଡ଼ୋମାଛ' ଦେଖାଯାନ୍ତି ।

କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀରେ 'ଘାଟପୂଜା'ରେ ବେହେରା-ପୂଜକମାନେ ମାଛମାନଙ୍କ ନାମଧରି ଡାକନ୍ତି । ସେମାନଙ୍କୁ ଖିଚିଡ଼ି ଓ ମିଷ୍ଟନାଦି ଦିଆଯାଏ । ସ୍ୱର୍ଗୀୟ ଦିବାକର ହୋତା ଥିଲେ ଏହି ବଂଶର ସର୍ବପ୍ରଥମ ପୂଜକ ଓ ଭକ୍ତ । ତେଣୁ ପୂଜ୍ୟପୂଜାର ପରମ୍ପରାକୁ ସସମ୍ମାନ ଜଣାଇ ହୋତା ବଂଶଧରଙ୍କୁ ଶିବରାତ୍ରୀ ସମୟରେ ମନ୍ଦିରକୁ ନିମନ୍ତ୍ରଣ କରାଯାଇ ପୂଜାର୍ଚ୍ଚନା ସର୍ବଶୁଭରେ ସମ୍ପନ୍ନ କରାଯାଇଥାଏ । ତେବେ ଆହୁରି ଗୋଟିଏ ବିଷୟ ହେଲା ହୁମା ଗ୍ରାମରେ 'ହୋତାବରଣ ମଣ୍ଡପ' ରହିଛି । ଶିବରାତ୍ରି ଦିନ ଏହି ସ୍ଥାନରେ ହୋତାମାନଙ୍କୁ ବରଣ କରାଯାଇଥାଏ । ଏହି ସମୟରେ ଭଣ୍ଡାରରୁ ଆଳଟ (ଧୁକ୍‌ନା), ମଶାଲ, ଚାମର, ରୁପାରେ ନିର୍ମିତ ଦଣ୍ଡ (ଜଗତ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟଙ୍କ ଭ୍ରମଣ ସମୟରେ ଯାହା ତାଙ୍କର ସେବକମାନେ ଧରିଥିଲେ ।) । ହୁଏତ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଏହି ବରଣ ସମୟର ଦୃଶ୍ୟକୁ ଆରଣ୍ୟକ ବ୍ରାହ୍ମଣ ସମାଜ ନେତା ବର୍ଣ୍ଣନା କରିଛନ୍ତି । ଏଠାରେ ଆଉ ଏକ ଦାୟିତ୍ୱ ହୋତାମାନେ ତୁଲାଉଥିଲେ । ଏହି ବରଣ ସମୟରେ ଜାତି ଓ ଧର୍ମ ସମ୍ବନ୍ଧୀୟ ମାମଲା ଗୁଡ଼ିକ ବରେଣ୍ୟ ହୋତାଗଣ ମୀମାଂସା କରୁଥିଲେ । ଦଣ୍ଡ ସ୍ୱରୂପ ଲୋକମାନେ ଅର୍ଥଦଣ୍ଡ ଦେଉଥିଲେ । ଯେଉଁ ଅର୍ଥଦଣ୍ଡ କି 'ସମ୍ବଲପୁର ରାଜକୋଷ'ରେ ଜମା ହେଉଥିଲା । ପରବର୍ତ୍ତୀ ସମୟରେ ଉପରୋକ୍ତ ସଂଗୃହୀତ ଅର୍ଥରାଶିକୁ ସମ୍ବଲପୁର ଦେୱାନ୍ ଦକ୍ଷିଣରାୟ ପଶ୍ଚିମ ଓଡ଼ିଶାରେ ସାତଟି ଶିବମନ୍ଦିରର ନିର୍ମାଣ କାର୍ଯ୍ୟରେ ଲଗାଇଥିଲେ । ଯାହାକି ହୁମା ଶିବ ମନ୍ଦିରକୁ ଯୋଗ କରି ଅଷ୍ଟଶମ୍ଭୁ ନାମରେ ପରିଚିତ । ଏହା କହିବା ବାହୁଲ୍ୟଯେ, ଉପରୋକ୍ତ ସମ୍ବଲପୁର ରାଜାଙ୍କ ବ୍ୟତୀତ ଅନ୍ୟ କୌଣସି ରାଜା ଅର୍ଥରାଶି ଦେବାର ଅଧିକାର ନଥିଲା । ଐତିହାସିକ ଶିବ ପ୍ରସାଦ ଦାଶ ତାଙ୍କର "ସମ୍ବଲପୁର

ଇତିହାସ'' (୧୯୬୨, ପୃ. ୩୮୨)ରେ ଲେଖିଛନ୍ତି ଯେ ଦେବଗଡ଼ ରାଜାଙ୍କୁ ଛାଡ଼ି ଅନ୍ୟ କୌଣସି ରାଜାଙ୍କୁ ଜ୍ୱଳନ୍ତ ମଶାଳ ଦ୍ୱାରା ପାଛୋଟି ଆଣିବାର ପରମ୍ପରା ନଥିଲା । କିନ୍ତୁ ଏହି ସ୍ଥାନରେ ହୋତାମାନଙ୍କୁ ମଶାଳ ଦ୍ୱାରା ବରଣ ସ୍ଥାନରୁ ପାଛୋଟି ଆଣିବାର ପରମ୍ପରା ରହିଛି । ଯେହେତୁ ଏହା ପୁରୀ ରାଜାଙ୍କଦ୍ୱାରା ପ୍ରଦତ୍ତ ତେଣୁ ଏହାକୁ ଲୋପ କରିବାକୁ ସମ୍ବଲପୁର ରାଜା ଉଚିତ୍ ମନେ କରିନଥିଲେ । ଏହି ପୂଜାର୍ଚ୍ଚନା ଓ ଆଳତି ସମୟରେ ପ୍ରବଳ ଲୋକାରଣ୍ୟ ହୋଇଥାଏ । ସେତେବେଳେ ଭକ୍ତମାନେ ବଡ଼ପାଟିରେ କହିଥାନ୍ତି : ''ପପଙ୍ଗା ହୋତାର ବଂଶ ବଢୁ ।''

ମାଛଟିଏ କାଟିଲା ବେଳକୁ ଜଣେ ସ୍ତ୍ରୀଲୋକ ପଥର ହୋଇଯାଇଥିବାର ବିଶ୍ୱାସ ରହିଛି । ବିସ୍ମୟ ଏହି ଯେ, ବନ୍ୟା ସମୟରେ ଏମାନେ (ମାଛମାନେ) ଅନ୍ତର୍ଦ୍ଧାନ ହୋଇଯାଆନ୍ତି । ବିଶ୍ୱାସ ଅନୁସାରେ ମନ୍ଦିର ତଳେଥିବା ଏକ ପୁଷ୍କରିଣୀକୁ ଏମାନେ ଚାଲିଯାଆନ୍ତି ।

'ହୁମା' ଶ୍ରୀ ଶ୍ରୀ ବିମଳେଶ୍ୱର ମହାଦେବଙ୍କ ପୂଜାପାଠ ପ୍ରଥମେ ପପଙ୍ଗା ଗ୍ରାମର ହୋତା ବଂଶର ଆଦି ପୁରୁଷ ଦିବାକର ହୋତା କରୁଥିଲେ । ତାଙ୍କ ପରେ ଯେଉଁମାନେ କରୁଥିଲେ ସେମାନେ ହେଲେ :

(୧) ଦିବାକର ହୋତା – ୧୨୨୦ ଖ୍ରୀ:
(୨) ହରିଚନ୍ଦନ ହୋତା
(୩) ସେବକ ହୋତା
(୪) ବଲ୍ଲଭ ହୋତା
(୫) ବାସୁଦେବ ହୋତା
(୬) ଜଗନ୍ନାଥ ହୋତା
(୭) ସାରଙ୍ଗ ହୋତା
(୮) ଉଦେକର ହୋତା
(୯) ବିଦ୍ୟାଧର ହୋତା
(୧୦) ବାଚେଶ୍ୱର ହୋତା
(୧୧) ବୈଦ୍ୟନାଥ ହୋତା– ୬ ଜଣ ପୁଅ – (୧) ଚନ୍ଦ୍ରଶେଖର ହୋତା
(୨) ହରିବଂଶ ହୋତା
(୩) କୃଷ୍ଣ ହୋତା
(୪) ନାରାୟଣ ହୋତା

(୫) ରାମ ହୋତା
(୬) ବାଲୁଙ୍କେଶ୍ୱର ହୋତା

(୧୨) ସଦାଶିବ ହୋତା – ୩ ଜଣ ପୁଅ – (୧) କୃପାସିନ୍ଧୁ ହୋତା
(୨) ଜଗବନ୍ଧୁ ହୋତା
(୩) ଭୁବନ ହୋତା

ଏଠାରେ ସୂଚନାଯୋଗ୍ୟ ଯେ, ଦିବାକର ହୋତାଙ୍କ ସମୟରେ ପୁରୀ ଗଜପତି ମହାରାଜ ତୃତୀୟ ଅନଙ୍ଗ ଭୀମଦେବ 'ବିଷ୍ଣୁ'ନାମକ ଜଣେ ସେନାପତିଙ୍କୁ ପୁରୀରୁ ହୁମା ମନ୍ଦିରକୁ ସାଙ୍ଗରେ ଆଣିଥିଲେ । ତାଙ୍କର କିଛି ଲେଖାଥିବାର ସୂଚନା ପପଙ୍ଗା ହୋତା ପରିବାରର ମୁଖ୍ୟ ସ୍ୱର୍ଗୀୟ ଶ୍ରୀଯୁକ୍ତ ସୀତାରାମ ହୋତାଙ୍କଠାରୁ ଶୁଣିବାକୁ ମିଳିଥିଲା । ବଲ୍ଲଭ ହୋତାଙ୍କ ସମୟରେ ସମ୍ବଲପୁର ରାଜା ବଳରାମ ଦେବ ଆସିଥିଲେ । ଉଦେକର ହୋତାଙ୍କ ବେଳେ ମନ୍ଦିରର ବୃଷଭ ମଣ୍ଡପ ତିଆରି ହୋଇଥିଲା । ବୈଦ୍ୟନାଥ ହୋତାଙ୍କ ସମୟରେ ଭୈରବୀ ମନ୍ଦିର ନିର୍ମିତ ହୋଇଥିଲା । ଠିକ୍ ସେହିପରି ସଦାଶିବ ହୋତାଙ୍କ ତିନିପୁଅ ମଧ୍ୟରୁ ମଧ୍ୟମ ପୁତ୍ର ଜଗବନ୍ଧୁ ହୋତା – ସୁରେନ୍ଦ୍ରସାଏଙ୍କ ସ୍ୱାଧୀନତା ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବେ ଯୋଗଦାନ କରିଥିଲେ । ଜଗବନ୍ଧୁ ହୋତାଙ୍କୁ ଇଂରେଜ ସରକାର ଆଜୀବନ କାରାବାସ ଦେଇଥିଲେ ଓ ତାଙ୍କର ଶେଷ ଜୀବନ ଅସୁରଗଡ଼ ଜେଲ୍‌ରେ ନିର୍ବାପିତ ହୋଇଥିଲା । ଏହି ଜାତିପାଇଁ ଏ ବଂଶର ଉତ୍ସର୍ଗୀକୃତ ମନୋଭାବ ଏକାନ୍ତ ଲକ୍ଷଣୀୟ ।

**ଗଙ୍ଗାଧରଙ୍କ ''ଉତ୍କଳଲକ୍ଷ୍ମୀ''ରେ ହୁମା-ବିମଳେଶ୍ୱର :**

ସ୍ୱଭାବ କବି ଗଙ୍ଗାଧର ମେହେର ତାଙ୍କର ପ୍ରସିଦ୍ଧ କାବ୍ୟ ''ଉତ୍କଳ-ଲକ୍ଷ୍ମୀ''ରେ ହୁମା–ବିମଳେଶ୍ୱରଙ୍କ ପ୍ରସଙ୍ଗର ଅବତାରଣା କରି ଲେଖିଛନ୍ତି:

× × ×

''ତହୁଁ କିଛି ଦୂରେ 'ହୁମା' ମହେଶ୍ୱର
ଚାହିଁ ତା' ଚାରୁମୂରତି,
ସ୍ନେହେ ଡାକିବାରୁ ନିକଟକୁ ତାଙ୍କ
ଯିବାକୁ ଦେଇ ସମ୍ମତି ।
ମହେଶ–ଅଙ୍ଗୁଳି– ରେଖାଙ୍କିତ ପଥେ
ଉତ୍ତରକୁ ଏକ ଧାର,

ଗଲା ଘୋର ଶିଳା- ସଙ୍କୁଳ ଦୁର୍ଗମ
ବନପଥ ହୋଇପାର ।
ତୋଷି ତାଙ୍କୁ ପୁଣି ପୂର୍ବଧାରେ ମିଶି
ଗମନ କରି ସତ୍ୱରେ,
ଆସି ତୋ' ପାଶରେ ମିଳନ୍ତେ ସସ୍ନେହେ
ବସାଇ ଅଛୁ ଅଙ୍କରେ ।
ପରସ୍ପର ଶୋଭା- ବର୍ଦ୍ଧନ କାରଣେ
ହୋଇଅଛି ସମାହାର,
ସୁନ୍ଦର ପ୍ରତିମା ଗଳେ ଦେଲା ବିଧି
ଇନ୍ଦ୍ର ନୀଳମଣି ହାର ।"

(ଗଙ୍ଗାଧର ଗ୍ରନ୍ଥାବଳୀ – ୧୯୬୮, ପୃ.୧୯୩)

"ମହେଶ-ଅଙ୍ଗୁଳି ରେଖାଙ୍କିତ ପଥେ ଉତ୍ତରକୁ ଏକ ଧାର"– 'ଉତ୍ତରକୁ ଏକ ଧାର'ର ଅର୍ଥ ଉତ୍ତର ଦିଗକୁ ନୁହେଁ, ଏଠାରେ ପଶ୍ଚିମ ଦିଗ ବା ପଶ୍ଚିମ ଆଡ଼କୁ ଗୋଟିଏ ଧାର ବହିଯାଇଛି । ଗଙ୍ଗାଧରଙ୍କ ଏହି ପଦରେ ଶିବଙ୍କ ପାଞ୍ଚ ଅଙ୍ଗୁଳିକୁ ପାଞ୍ଚଟି ଧାରା ସହିତ ତୁଳନା କରାଯାଇଛି । ଯେଉଁ ପାଞ୍ଚଟି ଧାର ବହିଯାଇଛନ୍ତି, ସେହି ପାଞ୍ଚଟି ଧାରର ନାମ ଗୁଡ଼ିକ ହେଉଛି : (୧) ମଛିନ୍ଦ୍ରଧାର, (୨) ହଂସଧାର, (୩) ହରିବଂଶ ଧାର, (୪) କୁଶରାପାଲ ଧାର ଏବଂ (୫) ତେତିଲିଆ ଧାର ।

ପପଙ୍ଗା ହୋତା ବ୍ରାହ୍ମଣଙ୍କ ଦ୍ୱାରା ପୂଜିତ ହୋଇ ଭଗବାନ ଶିବ ନିଜର ରୂପକୁ ଭକ୍ତଙ୍କ ଆଗରେ ପ୍ରକାଶ କରିଦେଲେ । ଫଳରେ ସେହି ଦିନଠାରୁ ହୁମା ଗ୍ରାମରେ ଉତ୍କଳ ଗଙ୍ଗା– ମହାନଦୀ କୂଳରେ ବାବା ଶ୍ରୀ ଶ୍ରୀ ବିମଳେଶ୍ୱର ମହାପ୍ରଭୁ ପ୍ରତିଦିନ ପୂଜା ପାଉଛନ୍ତି । ଗଙ୍ଗାଧରଙ୍କ ଉପରୋକ୍ତ ବର୍ଣ୍ଣନା ପ୍ରସଙ୍ଗରେ ଆଲୋକପାତ କରି ଅଧ୍ୟାପକ ଡ. ରଘୁନାଥ ମେହେର ଲେଖିଛନ୍ତି :

"ଠାକୁର ଲିଙ୍ଗ ରୂପରେ ପ୍ରକଟ ହେଲେ ସିନା, ତାଙ୍କ ସ୍ନାନ ପାଇଁ ନିକଟରେ କୌଣସି ଜଳାଶୟ ବା ବାମ୍ଫି ନଥିଲା । ମହାନଦୀର ଦୂରତା ଆପାତତଃ ଦୁଇ କିଲୋମିଟର ଥିଲା । ତେଣୁ ଦେବ ଦେବ ମହାଦେବ ନିତ୍ୟସ୍ନାନ ପାଇଁ ଦୀର୍ଘପଥ ଅତିକ୍ରମ ଯିବା କଷ୍ଟକର ହେବ ମନେକରି ଭଗବାନ ଶିବ ନିଜ ମସ୍ତକରେ ଧାରଣ କରିଥିବା ଧବଳାଙ୍ଗୀ ମାଆ

ଗଙ୍ଗାଙ୍କୁ ଅନୁରୋଧ କଲେ, ତାଙ୍କ ବକ୍ଷରୁ କିଛି ଜଳ ପ୍ରଦାନ କରିବା ପାଇଁ । ପତିତପାବନୀ ମାଆ ଗଙ୍ଗା ଭଗବାନ ଶିବଙ୍କ ମନୋଭାବ ବୁଝିପାରି କହିଲେ– "ଭଗବାନ ଶିବ ! ଆପଣ ନିଜ କନିଷ୍ଠ ଆଙ୍ଗୁଳିରେ ମୋ ଶରୀରରୁ ଏକ ଧାର ଜଳ ଟାଣି ନିଅନ୍ତୁ । ଫଳତଃ ମହାନଦୀର ମୂଳବକ୍ଷରୁ ଏକ କ୍ଷୁଦ୍ର ଜଳଧାରାଟିଏ ଆପଣଙ୍କ ସ୍ନାନପାଇଁ ବ୍ୟବହାର କରି ପାରିବେ । ଦେବୀ ଗଙ୍ଗାଙ୍କ ଏତାଦୃଶ ନିର୍ଦ୍ଦେଶ ପାଇଲା ପରେ ଚତୁର ଶିବ ନିଜର ଡାହାଣ ହସ୍ତର କନିଷ୍ଠ ଅଙ୍ଗୁଳି ଜଳ ଆଣିବାରେ ବ୍ୟବହାର ନକରି ସମଗ୍ର ପାଞ୍ଚ ଆଙ୍ଗୁଳିରେ ମହାନଦୀ ବକ୍ଷରୁ ନିଜ ପୀଠ ଆଡ଼କୁ ଜଳଧାର କାଢ଼ିନେଲେ; ଫଳତଃ କୂଳ ଲଘନ କାରିଣୀ ମହାନଦୀର ବିପୁଳ ବକ୍ଷରେ ସ୍ୱଳ୍ପ ଜଳ ପ୍ରବାହିତ ହୋଇ ଅଧିକାଂଶ ଜଳ ଶିବ କାଢ଼ି ନେଇଥିବା ଜଳଧାରାରେ ପ୍ରବାହିତ ହେଲା ଏବଂ ମୂଳ ନଦୀଠାରୁ ଆଙ୍ଗୁଳିଦ୍ୱାରା ପ୍ରସ୍ତୁତ ନଦୀର ବକ୍ଷ ପ୍ରସାରିତ ହୋଇଗଲା । ମହାନଦୀର ବିପୁଳ ବକ୍ଷ କ୍ଷୀଣ ତନୁ ହେବା ଦେଖି ଦେବୀ ଗଙ୍ଗା ଭଗବାନ ଭୋଳାଶଙ୍କରଙ୍କ କପଟତାକୁ ବୁଝି ପାରିଲେ । କନିଷ୍ଠ ଅଙ୍ଗୁଳି ଆଘାତ ପ୍ରାପ୍ତ ଜଳଧାରାରେ ଶିବଙ୍କ ସ୍ନାନ ତଥା ପୂଜାବିଧି ସମ୍ପନ୍ନ ହେବାରେ ଆଦୌ ଅସୁବିଧା ନଥିଲା, କିନ୍ତୁ କପଟ-କରି ଶିବ ପାଞ୍ଚ ଅଙ୍ଗୁଳି ପ୍ରୟୋଗ କରି ନିଜ ଜଳଧାରାକୁ ବିଶାଳ କରିବା ଲକ୍ଷ୍ୟରେ ଗଙ୍ଗା ମାତା ଭଗବାନ ଶିବଙ୍କ ଅପକର୍ମରେ କ୍ଷୁବ୍ଧ ହୋଇ ଅଭିଶାପ ଦେଲେ "ହେ କପଟୀ ଧୂର୍ଜଟୀ ! ଆପଣ କପଟତାର ଆଶ୍ରୟନେଇ ମୋ ବକ୍ଷକୁ କ୍ଷୀଣ କରିଦେଲେ ସିନା; ହେଲେ ଆପଣଙ୍କ ଦ୍ୱାରା ସୃଷ୍ଟ ଜଳଧାରାର ବକ୍ଷ ପ୍ରସ୍ତରମୟ ହୋଇଯାଉ । ମୁଁ ଗଙ୍ଗା ଆଜି ଆପଣଙ୍କୁ ଏହି ଅଭିଶାପ ଦେଉଛି ।" ସତକୁ ସତ ମୂଳ ମହାନଦୀର ବକ୍ଷରୁ ଶିବଙ୍କ କରାଘାତରେ ଜନ୍ମନେଇଥିବା ପ୍ରଶସ୍ତ ଜଳଧାରା ପ୍ରସ୍ତର- ମୟ ହୋଇଗଲା । ମହାନଦୀର ଏହି ପ୍ରସ୍ତରୀଭୂତା କଳେବର ଠିକ୍ ବାବା ବିମଳେଶ୍ୱରଙ୍କ ମନ୍ଦିର ପର୍ଯ୍ୟନ୍ତ ପରିଦୃଶ୍ୟ ହୋଇଥାଏ । ହୁମା ମନ୍ଦିରର ନିମ୍ନଭାଗରେ ଧମା ଗ୍ରାମ ଅବସ୍ଥିତ । ଏହିଠାରେ ଶିବଙ୍କ ଭିକ୍ଷାପ୍ରାପ୍ତ ଜଳଧାରାଟି ପୁଣି ମୂଳ ମହାନଦୀରେ ମିଳିତ ହୋଇଯାଇଛି ଏବଂ ଏହିଠାରୁ ମହାନଦୀର ବକ୍ଷ ଆଉ ପ୍ରସ୍ତରୀଭୂତା ନୁହେଁ । ସତ୍ୟଧର୍ମ ପ୍ରତି ଅବମାନନା କଲେ କେବଳ

ସାଧାରଣ ଲୋକ ଜୀବନରେ ନୁହେଁ ଦେବତା ମାନଙ୍କ ଜୀବନରେ ମଧ୍ୟ ତାହାର କୁପ୍ରଭାବ ପଡ଼ିଥାଏ ।''

(ପଶ୍ଚିମ ଓଡ଼ିଶାର ଶୈବ ସଂସ୍କୃତି –୨୦୧୨, ପୃ.୪୧-୪୨)

## ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ

ପଶ୍ଚିମ ଓଡ଼ିଶାରେ – ସମ୍ବଲପୁର ଜିଲ୍ଲାରେ ଅଷ୍ଟଶମ୍ଭୁଙ୍କର ଯେପରି ଆବିର୍ଭାବ ହୋଇଛି, ତାହାର ବହୁ ପୂର୍ବରୁ ଭାରତବର୍ଷରେ ମଧ୍ୟ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କର ଆବିର୍ଭାବ ହୋଇଥିଲା ଏବଂ ପରେ ଏହା ଜଗତ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପୁନଃ ପ୍ରତିଷ୍ଠିତ ହୋଇଥିଲା । କିନ୍ତୁ ଦ୍ୱାଦଶ-ଜ୍ୟୋତିର୍ଲିଙ୍ଗଙ୍କର ଆବିର୍ଭାବ ହୋଇଥିବାର କାଳ ନିରୂପଣ ସଠିକ୍‌ରୂପେ ନିରୂପିତ ବା ପ୍ରମାଣିତ ହୋଇ ନଥିଲେ ମଧ୍ୟ ଏହାର ବର୍ଣ୍ଣନା ବିଭିନ୍ନ ପୁରାଣ-ଶାସ୍ତ୍ର ମାନଙ୍କରେ ରହିଛି । 'ଲିଙ୍ଗ ପୁରାଣ'ରେ ଏହାର ବର୍ଣ୍ଣନା ଦେଖିବାକୁ ମିଳେ । ଏହି ସ୍ତୋତ୍ର ସନତ୍ କୁମାରଙ୍କ ଦ୍ୱାରା ନୈମିଷ୍ୟାରଣ୍ୟରେ ମୁନିମାନଙ୍କୁ ଶୁଣାଇଥିବାର ବର୍ଣ୍ଣନା ରହିଛି । ଯଥା :

''ସୌରାଷ୍ଟ୍ରେ ସୋମନାଥଂଚ, ଶ୍ରୀଶୈଳେ ମଲ୍ଲିକାର୍ଜ୍ଜୁନମଂ,<br>
ଉଜ୍ଜୟିନ୍ୟାଂ ମହାକାଳଂ, ଓଁକାରଂ ମମଳେଶ୍ୱରମ୍,<br>
ପରଲ୍ୟାଂ ବୈଦ୍ୟନାଥଂଚ, ଡାକିନ୍ୟାଂ ଭୀମଶଙ୍କରମ୍,<br>
ସେତୁବନ୍ଧେତୁ ରାମେଶଂ, ନାଗେଶଂ ଦାରୁକାବନେ,<br>
ବାରାଣସ୍ୟାଂ ତୁ ବିଶ୍ୱେଶଂ, ତ୍ର୍ୟମ୍ବକଂ ଗୋମତୀ ତଟେ,<br>
ହିମାଳୟେତୁ କେଦାରଂ, ଘୃଷ୍ଣେଶଂ ଚ ଶିବାଳୟେ<br>
ଏତାନି ଜ୍ୟୋତିର୍ଲିଙ୍ଗାନି, ସାୟଂ ପ୍ରାତଃ ପଠେତ୍‌ନରଃ,<br>
ସପ୍ତଜନ୍ମ କୃତଂ ପାପଂ, ସ୍ମରଣେନ ବିନଶ୍ୟତି ।।''

ଅର୍ଥାତ୍ ସକାଳେ ଓ ସନ୍ଧ୍ୟାରେ ଏହି ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କୁ ସ୍ମରଣକଲେ ସପ୍ତଜନ୍ମର ପାପଖଣ୍ଡନ ହୋଇଥାଏ । ଏହି ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ହେଲେ :

(୧) ସୋମନାଥ – ସୌରାଷ୍ଟ୍ର – ଗୁଜୁରାଟ୍ ।<br>
(୨) ମଲ୍ଲିକାର୍ଜୁନ – ଶ୍ରୀଶୈଳମ୍ – ଆନ୍ଧ୍ରପ୍ରଦେଶ ।<br>
(୩) ମହାକାଳେଶ୍ୱର – ଉଜ୍ଜୟିନୀ – ମଧ୍ୟପ୍ରଦେଶ ।<br>
(୪) ଓଂକାରନାଥ – ଓଂକାରେଶ୍ୱର – ମଧ୍ୟପ୍ରଦେଶ ।<br>
(୫) ବୈଦ୍ୟନାଥ – ଦେଓଧର – ଝାଡ଼ଖଣ୍ଡ ।

(୬) ଭୀମାଶଙ୍କର-ଡାକିନୀ-ନୈନିତାଳ (କ) ଆଦି ଶଙ୍କରାଚାର୍ଯ୍ୟଙ୍କ ମତରେ ।
ଭୀମାଶଙ୍କର–ଭାବଗିରି–ମହାରାଷ୍ଟ୍ର– (ଖ) ଶିବ ପୁରାଣ ମତରେ ।
(୭) ରାମନାଥ – ରାମେଶ୍ୱର – ତାମିଲନାଡୁ ।
(୮) ନାଗେଶ୍ୱର– ଦ୍ୱାରକାବନ – ଗୁଜୁରାଟ୍ ।
(ଯାହାଙ୍କୁ ଶ୍ରୀକୃଷ୍ଣ ଭଗବାନ ନିୟମିତ ପୂଜା କରୁଥିଲେ।)
(୯) ବିଶ୍ୱେଶ୍ୱର – ବାରାଣାସୀ – ଉତ୍ତରପ୍ରଦେଶ ।
(୧୦) ତ୍ରେିମ୍ବକେଶ୍ୱର – ନାସିକ୍ – ମହାରାଷ୍ଟ୍ର ।
(ଗୋମତୀ/ଗୋଦାବରୀ ତଟରେ)
(୧୧) କେଦାରନାଥ – କେଦାରଭ୍ୟାଲି – ଉତ୍ତରାଞ୍ଚଳ ।
(୧୨) ଘୃଷ୍ଣେଶ୍ୱର – ଭେରୁଲ – ମହାରାଷ୍ଟ୍ର । (ଦେବ ସରୋବର)

ଏହି ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କ ସଂପର୍କରେ ଆଲୋଚନା କଲାବେଳେ ଗୋଟିଏ କଥା ସ୍ମରଣକୁ ଆସେ । ତାହା ହେଉଛି ଷଷ୍ଠ ଜ୍ୟୋତିର୍ଲିଙ୍ଗ ଭୀମାଶଙ୍କରଙ୍କ ସଂପର୍କରେ । ଭୀମାଶଙ୍କର ଦୁଇଟି ସ୍ଥାନରେ ପୂଜା ପାଇ ଆସୁଛନ୍ତି । ଗୋଟିଏ ହେଉଛନ୍ତି "ଲିଙ୍ଗ ପୁରାଣ"ର ଶ୍ଳୋକ ଅନୁସାରେ 'ଡାକିନୀ'ରେ ଭୀମାଶଙ୍କର ଯାହା ନୈନିତାଳ ନିକଟରେ ଅବସ୍ଥିତ ଓ ଆଦି ଶଙ୍କରାଚାର୍ଯ୍ୟଙ୍କଦ୍ୱାରା ଏହା ପୁନଃ ପ୍ରତିଷ୍ଠିତ ଏବଂ ଦ୍ୱିତୀୟ ଭୀମାଶଙ୍କର ହେଉଛନ୍ତି ମହାରାଷ୍ଟ୍ରର ଭାବଗିରିରେ ପୂଜା ପାଉଛନ୍ତି । କିନ୍ତୁ କେହି କେହି ଡାକିନୀରେ ପୂଜା ପାଉଥିବା "ଭୀମା ଶଙ୍କର"ଙ୍କୁ ଦ୍ୱାଦଶ ଜ୍ୟୋତିଲିଙ୍ଗ ମଧ୍ୟରେ ଅନ୍ତର୍ଭୁକ୍ତ ନକରି ମହାରାଷ୍ଟ୍ରର ଭାବଗିରିରେ ଅଧିଷ୍ଠିତ "ଭୀମାଶଙ୍କର"ଙ୍କୁ ଦ୍ୱାଦଶ-ଜ୍ୟୋତିର୍ଲିଙ୍ଗ ମଧ୍ୟରେ ଗ୍ରହଣ କରିଥାନ୍ତି । ତେବେ ଯେ ଯାହା ହେଉନା କାହିଁକି ଉଭୟ ଯେ, ଦ୍ୱାଦଶ-ଜ୍ୟୋତିର୍ଲିଙ୍ଗ ଅଟନ୍ତି ଏହା କହିବା ବାହୁଲ୍ୟ ମାତ୍ର ।

**ମହା-ଜ୍ୟୋତିର୍ଲିଙ୍ଗ :**

**୧ । ଶ୍ରୀଲିଙ୍ଗରାଜ – ଭୁବନେଶ୍ୱର – ଓଡ଼ିଶା ।**

ଏକାମ୍ର କାନନରେ ଅଧିଷ୍ଠିତ ଶ୍ରୀ ଲିଙ୍ଗରାଜ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କ ଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ହୋଇଥିଲେ ମଧ୍ୟ ଏହାଙ୍କୁ ଜ୍ୟୋତିର୍ଲିଙ୍ଗଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ନକରି "ମହା ଜ୍ୟୋତିର୍ଲିଙ୍ଗ" ଭାବରେ ଗ୍ରହଣ କରାଯାଇ ଏହାଙ୍କଠାରୁ ଆଶୀର୍ବାଦ ଭିକ୍ଷା କରାଯାଇଥାଏ । ଅତଏବ ଶ୍ରୀଲିଙ୍ଗରାଜ ସ୍ୱତନ୍ତ୍ର ମର୍ଯ୍ୟାଦାର ପ୍ରତୀକ ଅଟନ୍ତି ।

''ଶମ୍ଭୁରୀଶଃ ପଶୁପତିଃ ଶିବଃ ଶୂଳୀ ମହେଶ୍ୱରଃ ।
ଈଶ୍ୱରଃ ସର୍ବଈଶାନଃ ଶଙ୍କରଶ୍ଚନ୍ଦ୍ରଶେଖରଃ ।।
ଭୂତେଶଃ ଖଣ୍ଡପତିର୍ଶୁର୍ଗିରୀଶୋ ଗିରିଶେ ମୃଢ଼ଃ ।
ମୃତ୍ୟୁଞ୍ଜୟଃ କୃତ୍ତିବାସଃ ପିନାକୀ ପ୍ରମଥାଧିପଃ ।।
ଉଗ୍ରଃ କପର୍ଦୀ ଶ୍ରୀକଣ୍ଠଃ ଶୀତିକଣ୍ଠଃ କପାଳଭୃତ୍ ।
ବାମଦେବୋ ମହାଦେବୋ ବିରୁପାକ୍ଷ-ତ୍ରିଲୋଚନଃ ।।
କୃଶାନୁରୋତାଃ ସର୍ବଜ୍ଞୋ ଧୂର୍ଜଟିର୍ନୀଳଲୋହିତଃ ।
ହରଃ ସ୍ମ ରହରୋ ଭର୍ଗସ୍ତ୍ରଂ କମ୍ବି ପୂରରନ୍ତକଃ ।।
ଗଙ୍ଗାଧରୋଽନ୍ଧ କରିପୁଃ କ୍ରତୁ ଧ୍ୱଂସୀ ବୃଷଧ୍ୱଜଃ ।
ବ୍ୟୋମକେଶୋ ଭବୋ ଭୀମଃ ସ୍ଥାଣୁ ରୁଦ୍ର ଉମାପତି ।।''

(ଅମରକୋଷ ଅଭିଧାନ)

ଉପରୋକ୍ତ ଶ୍ଳୋକଟି ''ନାମେ ଲିଙ୍ଗାନୁଶାସନ ଅମରକୋଷଃ'' ଅଭିଧାନ ଗ୍ରନ୍ଥରେ ବର୍ଣ୍ଣିତ ହୋଇଥିବା ଏହା ହେଉଛି ମହାଦେବଙ୍କ ୪୮ଟି ନାମ । ଏହା ବ୍ୟତୀତ ତାଙ୍କୁ ''ଆଶୁତୋଷ'' ମଧ୍ୟ କହନ୍ତି । ''ଆଶୁତୋଷ'' ଶବ୍ଦର ତାତ୍ପର୍ଯ୍ୟ ଏହି ଯେ– ''ଆଶୁ''ମାନେ ଶୀଘ୍ର । ''ତୋଷ''ମାନେ ସନ୍ତୁଷ୍ଟ ହୁଅନ୍ତି । କାହାକୁ ସନ୍ତୁଷ୍ଟ ହୁଅନ୍ତି ? ଭକ୍ତ ମାନଙ୍କର ଭକ୍ତିରେ ସନ୍ତୁଷ୍ଟ ହୁଅନ୍ତି । ବାସହୀନ ଅରଖ, ଧୁତୁରା ଫଳ ଓ ବେଲପତ୍ର ତାଙ୍କର ଅତିପ୍ରିୟ । ''ଶିବ'' ଶବ୍ଦର ଅର୍ଥ 'ମଙ୍ଗଳମୟ' । ତେଣୁ ମଙ୍ଗଳମୟ ଶିବ ସଦା କାଳରେ ମାନବ ସମାଜର ମଙ୍ଗଳ ବିଧାନ ହିଁ କରିଥାନ୍ତି । ତେଣୁ ଭକ୍ତ କରିଥିବା ଅପରାଧକୁ ଭଗବାନଙ୍କଠାରେ କ୍ଷମା ମାଗିଥାଏ । ଜଗତ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ତାଙ୍କର ପ୍ରସିଦ୍ଧ ''ଶିବାପରାଧ–କ୍ଷମାପଣ ସ୍ତୋତ୍ରମ୍'' ସଂସ୍କୃତ କବିତାରେ ଲେଖିଛନ୍ତି :

''ଆଦୌ କର୍ମ ପ୍ରସଙ୍ଗାତ୍ କଳୟତି କଲୁଷଂ ମାତୃକୁକ୍ଷୌ ସ୍ଥିତଂ ମାଂ,
ବିଣ୍ମୂତା ମେଧ ମଧ୍ୟେ ବ୍ୟଥୟତି ନିତରାଂ ଜାଠରୋ ଜାତବେଦାଃ ।
ଯଦ୍‌ଯଦ୍ୱୈ ତତ୍ର ଦୁଃଖଂ ବ୍ୟଥୟତି ନିତରାଂ ଶକ୍ୟତେ କେନବକ୍ତୁଂ ।
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ।୧।''

ବାଲ୍ୟେ ଦୁଃଖାତିରେକୋ ମଳଲଳିତ ବପୁଃ ସ୍ତନ୍ୟପାନେ ପିପାସା
ନୋ ଶକ୍ୟଞ୍ଚେନ୍ଦ୍ରିୟେଭ୍ୟୋ ଭବାଗୁଣ ଜନିତା ଜନ୍ତବୋ ମାଂ ତୁଦନ୍ତି ।
ନାନାରୋଗାଧିଦୁଃଖାଦୁଦର ପରବଶଃ ଶଙ୍କରଂ ନ ସ୍ମରାମି ।

କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ।୨।

ପ୍ରୌଢ଼ୋଽହଂ ଯୌବନସ୍ଥୋ ବିଷୟ ବିଷଧରୈଃ ପଞ୍ଚଭିର୍ମର୍ମସନ୍ଧୌ
ଦଷ୍ଟୋନଷ୍ଟୋ ବିବେକଃ ସୁତଧନଯୁବତୀ ସ୍ୱାଦୁସୌଖ୍ୟେ ନିଷର୍ଣ୍ଣଃ ।
ଶୈବୀ-ଚିନ୍ତା ବିହୀନଂ ମମହୃଦୟମହୋ ମାନଗର୍ବାଧିରୂଢ଼ଂ
କ୍ଷନ୍ତବ୍ୟୋ ମେଽପରାଧଃ ଶିବ ଶିବ ଶିବ ଭୋଃ ଶ୍ରୀମହାଦେବ ଶମ୍ଭୋ ।୩।

ଏହାର ଓଡ଼ିଆ ଅନୁବାଦରେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଲେଖିଛନ୍ତି :

ଅପରାଧ କ୍ଷମାକର ।
ଶିବ ଶିବ ଶିବ ମହାଦେବ ହର ଯେ ।
ସଞ୍ଚିଛି କର୍ମ ପ୍ରସଙ୍ଗେ କଲୁଷ ଅଶେଷ ।।
ଭୁଞ୍ଜିଛି ଜନନୀ-ଗର୍ଭେ ବିଷ୍ଠାମୂତ୍ର କ୍ଲେଶ ।
ଦେଇଛି ଜଠରାନଳ ମୋତେ ଯେ ଯାତନା ।।
କେ ତାହା ନିୟତ କରି ପାରିବ ବର୍ଣ୍ଣନା ।୧।

ବାଲ୍ୟେ ଲଭିଅଛି କେତେ କଷ୍ଟ ଭୟଙ୍କର । ସ୍ତନ୍ୟ ପିଇବାକୁ ବଳ ନଥିଲା ମୋହର ।।
ବୋଲୁଥିଲି ଅଙ୍ଗେ ସଦା ନିଜ ମୂତ୍ରମଳ । ନଥିଲା ଅଙ୍ଗେ ମଶକ ତଡ଼ିବାକୁ ବଳ ।।
ନାନା ରୋଗେ ଦୁଃଖେ ପଡ଼ି ଉଦର ବଶରେ । ରହିଲି, ଶଙ୍କର ନାମ ସ୍ମରିନାହିଁ ଥରେ ।।
ବିଷୟ-ବିଷଧର ମୋ ଯୌବନ ପ୍ରୌଢ଼ରେ। ଦଂଶିଲେ ପଞ୍ଚଇନ୍ଦ୍ରିୟ ମର୍ମେ ଦୃଢ଼ତରେ ।।
ବିବେକ ହୁଅନ୍ତେ ଭ୍ରଷ୍ଟ ହର୍ଷ ମୋହମୁଖେ। ମଜ୍ଜିଲି ଯୁବତୀ-ସୁତଧନ-ସ୍ୱାଦୁ ସୁଖେ ।।
ମୋ ହୃଦୟ ହୋଇ ଶିବ ଚିନ୍ତାରେ ବିହୀନ । ହୋଇଥିଲା ଆହା ! ମାନ ଗରମ ଅଧୀନ ।।
ଏ ବାର୍ଦ୍ଧକ୍ୟେ ମୋର ସେହି ଇନ୍ଦ୍ରିୟ ସକଳ । କ୍ରମେକ୍ରମେ ହେଉଛନ୍ତି ଶିଥିଳ ବିକଳ ।।
ମତି ଗତି ହ୍ରାସ ପାଇ ହୋଇଲାଣି ଦୀନ । ତାପ ତ୍ରୟେ ଯୋଗେ ଦେହ ହେଲାଣିତ କ୍ଷୀଣ ।।
ପାପ ରୋଗ ବିୟୋଗରେ ପୁଣି ଅବସନ୍ନ । ମିଥ୍ୟା ମୋହ ଅଭିଳାଷେ ହୋଇଣ ସମ୍ପନ୍ନ ।।
(ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ – ୧୯୬୩, ପୃ.୩୭୮–୩୭୯)

—

## ପରିଶିଷ୍ଟ–(୧)

### ସମ୍ବଲପୁର ସମ୍ବାଦ

ଗତ ୧୬ ତାରିଖରେ ଭିକ୍ଟୋରିଆ ଟାଉନ୍ ହଲ୍‌ରେ କୃଷି ସମ୍ବନ୍ଧରେ ଗୋଟିଏ ସଭାର ଅଧିବେଶନ ହୋଇଥିଲା । ତହିଁରେ ସରକାରୀ, ବେସରକାରୀ ଅନେକ ସଭ୍ୟ ଉପସ୍ଥିତ ଥିଲେ । ତହିଁରେ ସ୍ଥିର ହେଲା ଯେ ଆଗାମୀ ଶିବରାତ୍ରୀ ଉପଲକ୍ଷ୍ୟରେ ସମ୍ବଲପୁରରୁ ୭ କୋଶ ଦୂରରେ ଅବସ୍ଥିତ ହୁମା ଗ୍ରାମରେ ଗୋଟିଏ ପ୍ରଦର୍ଶନୀ ବସିବ । ଏଠାରେ ଶିବରାତ୍ରୀ ଉପଲକ୍ଷ୍ୟରେ ପ୍ରତିବର୍ଷ ମେଳା ହେଉଥିବାରୁ ଏହା ପ୍ରଦର୍ଶନୀ ବସିବାର ଉପଯୁକ୍ତ ସ୍ଥାନ ବୋଲି ସଭା ଅନୁମାନ କଲେ। ବାବୁ ନଟବର ପୂଜାରୀ ସଭା ଭଙ୍ଗ ହେବାପରେ ସଭ୍ୟମାନଙ୍କର ଗୋଟିଏ ଫଟୋ ଗ୍ରହଣ କରିଥିଲେ ।

(ଉତ୍କଳ ଦର୍ପଣ– ୧/୪ : ତା ୨୨।୧।୧୯୦୬)

## ପରିଶିଷ୍ଟ–(୨)

### ହୁମାରେ ପ୍ରଦର୍ଶନୀ

ଶିବରାତ୍ରୀ ସମୟରେ ସମ୍ବଲପୁର ସହରରୁ ୭ କୋଶ ଦୂରରେ ଅବସ୍ଥିତ ହୁମା ଗ୍ରାମରେ ପ୍ରତିବର୍ଷ ଗୋଟିଏ ମେଳାହୁଏ । ଚଳିତବର୍ଷ କର୍ତ୍ତୃପକ୍ଷଙ୍କ ଯତ୍ନରେ ମେଳା ଗୋଟିଏ ନୂତନ ସଜ୍ଜାରେ ସଜ୍ଜିତ ହେବ । ପ୍ରଦର୍ଶନୀରେ କେବଳ କୃଷି ସମ୍ବନ୍ଧୀୟ ଦ୍ରବ୍ୟ ପ୍ରଦର୍ଶିତ ହେବ । ଆମ୍ଭମାନଙ୍କ ମତରେ ପ୍ରଦର୍ଶନୀର ପରିସର ଆହୁରି ଟିକିଏ ବୃଦ୍ଧିହେବା ବାଞ୍ଛନୀୟ । ଶିଳ୍ପଜାତ ପଦାର୍ଥ ମଧ୍ୟରେ ଦେଶର ସକଳ ପ୍ରକାର ଶିଳ୍ପଜାତ ଦ୍ରବ୍ୟ ଅର୍ନ୍ତଭୁକ୍ତ ହେବା ଉଚିତ୍ । ସମ୍ବଲପୁରବାସୀ ମହାରଣା ମାନଙ୍କର ଟିକିଏ ଅବନତି ହୋଇଥିବାର ବୋଧହୁଏ । ହୁମା ମେଳା ସମୟରେ ଏମାନେ କାଷ୍ଠ ନିର୍ମିତ ବିବିଧ ପ୍ରକାର ପ୍ରତିମା ବିକ୍ରୟ କରନ୍ତି । ତହିଁରୁ କାରିଗରି ସମ୍ବନ୍ଧରେ ସେମାନେ ଉନ୍ନତିର ନିମ୍ନତମ ସୋପାନରେ ଆସୀନ ଥିବାର ପରିଚୟ ମିଳେ । ମାଙ୍କଡ, କୁଣ୍ଢାଇ ନାମରେ ଖ୍ୟାତ ପୁତ୍ତଳିକା ଗୁଡ଼ିକ ଖଣ୍ଡିଏ ଲେଖାଏ କଦାକାର କାଷ୍ଠ ବ୍ୟତୀତ କିଛି ନୋହେ । ଭାଦ୍ରବ ଅମାବାସ୍ୟାରେ ଏମାନେ ତଦ୍ରୂପ କଦାକାର ଗାଈ, ସିଂହ ପ୍ରଭୃତି ବିକ୍ରୟ କରନ୍ତି । ପ୍ରଦର୍ଶନୀର ଆୟୋଜନକାରୀ ଗଣ ଏମାନଙ୍କ ପାଇଁ କିଞ୍ଚିତ୍ ପୁରସ୍କାର ରଖିଲେ, ଏମାନେ ମାର୍ଜିତ ପନ୍ଥାର ଅନୁସରଣ କରନ୍ତେ । ପ୍ରତିବର୍ଷ ଏହି ପ୍ରଦର୍ଶନୀ ବସିବା ବାଞ୍ଛନୀୟ ।

(ଉତ୍କଳ ଦର୍ପଣ– ୧/୭ : ତା ୧୨–୨–୧୯୦୬)

## ପରିଶିଷ୍ଟ-(୩)

## ହୁମା

ସମ୍ବଲପୁର ଜିଲ୍ଲାର ସଦର ତହସିଲ ଅନ୍ତର୍ଗତ ହୁମା ନାମକ ଗ୍ରାମ ସହରରୁ ୧୫ ମାଇଲ ଦୂରରେ ମହାନଦୀ କୂଳରେ ଅବସ୍ଥିତ । ଏଠାରେ ପ୍ରତିବର୍ଷ ଫାଲ୍‌ଗୁନ ମାସରେ ଶିବରାତ୍ରୀରେ ବଡ଼ଭାରୀ ମେଳା ହୁଏ । ଏ ବର୍ଷ ଉକ୍ତ ମେଳା ଗତ ତା ୨୩ ରିଖ ସୋମବାର ଦିନ ଶିବରାତ୍ରୀ ଉପଲକ୍ଷ୍ୟରେ ତିନିଦିନ ପର୍ଯ୍ୟନ୍ତ ବିଶେଷ ଭାବରେ ହୋଇଥିଲା । ଶିବରାତ୍ରୀ ପୂର୍ବର ରାତ୍ରରେ ମନ୍ଦିର ଦ୍ୱାରଦେଶ ଚନ୍ଦ୍ରାତପ, ଗେସ୍ ଆଲୋକ, ଫାନୁସ, ଲାଲଟିନ, ପ୍ରଦୀପ, ଆମ୍ରତୋରଣ ଓ ପୁଷ୍ପମାଳାରେ ସୁଶୋଭିତ ହୋଇ ମନକୁ ଆକର୍ଷଣ କରିଥିଲା । ବେଢ଼ା ମଧ୍ୟରେ ପାଞ୍ଚଗୋଟି ସଙ୍ଗୀତ ମଣ୍ଡଳୀ, ସାତଗୋଟି ସ୍ଥାନରେ କୃଷ୍ଣଲୀଳା, ଦୁଇ ସ୍ଥାନରେ ସଂକୀର୍ତ୍ତନ, ତିନିଗୋଟି କାଠିଆ ଓ ଅନେକ ସ୍ଥାନରେ ଭାଗବତ ମଣ୍ଡଳୀ ଏବଂ ଏସବୁ ବ୍ୟତୀତ ହାର୍‌ମୋନିୟମ୍ ସହଯୋଗରେ ସଙ୍ଗୀତ ଗାନ ମଧ୍ୟ ହେଉଥିଲା । ଗ୍ରାମର ଅନତି ଦୂରବର୍ତ୍ତୀ ବିସ୍ତୀର୍ଣ୍ଣ ପଡ଼ିଆରେ ବଡ଼ଭାରୀ ବଜାର ବସିଥିଲା । ତହିଁରେ ନାନାପ୍ରକାର ଆନୁମାନିକ ୧୫୦୦ ଶତ ପର୍ଯ୍ୟନ୍ତ ଦୋକାନ ସୁସଜ୍ଜିତ ହୋଇଥିଲା । ଏହି ରାତ୍ରରେ ମହାଦେବଙ୍କ ଚାରିପ୍ରହରକୁ ଚାରିପ୍ରକାର ପୂଜା ହୋଇଥାଏ । ଶେଷ ପ୍ରହରରେ ବେଢ଼ା ବା ମନ୍ଦିର ପରିକ୍ରମା ଆରମ୍ଭ ହେଲା । ଶେଷରେ ମହାଦୀପ ମନ୍ଦିରର ଚୂଡ଼ାରେ ସଂସ୍ଥାପନ କରାଗଲା । ଏ ବର୍ଷ ଉକ୍ତ ମେଳାକୁ ବହୁଦୂରରୁ ଦର୍ଶକମାନେ ଶିବଦର୍ଶନ ଲାଳସାରେ ଆସିଥିଲେ । ଯାତ୍ରୀଙ୍କ ରାତ୍ର ଦୁଇଘଣ୍ଟାରୁ ଦର୍ଶନ ଆରମ୍ଭ ହେଲା ତେବେ ମଧ୍ୟ ଅନେକେ ମନ୍ଦିର ମଧ୍ୟକୁ ପ୍ରବେଶ କରିପାରିଲେ ନାହିଁ । ପ୍ରଭାତରେ ବ୍ରାହ୍ମଣ ଭୋଜନ ହୋଇଥିଲା । ବୋଧହୁଏ ଏବର୍ଷ ୪୦/୫୦ ହଜାର ଲୋକ ସମବେତ ହୋଇଥିଲେ । ତା ୨୪ରିଖ ରାତ୍ର ଦଶଘଣ୍ଟା ସମୟରେ ପ୍ରବଳ ବତାସ ବର୍ଷା ହେଲା । ଏ ଜିଲ୍ଲା ମଧ୍ୟରେ ଏହା ଗୋଟିଏ ପ୍ରସିଦ୍ଧ ମେଳା । ('ଉତ୍କଳ ସେବକ' – ୧/୨୨ : ତା. ୦୫–୦୩–୧୯୧୪)

## ପରିଶିଷ୍ଟ-(୪)

## ସମ୍ବାଦ ସମ୍ବଲପୁର ।

ହୁମା ମହାଦେବଙ୍କଠାରେ ସହସ୍ର ସହସ୍ର ନରନାରୀ ସମବେତ ହୋଇ ଶିବ ଚତୁର୍ଦ୍ଦଶୀ ବ୍ରତ ପାଳନ କରିଅଛନ୍ତି । କେବେ ଶିବ ଚତୁର୍ଦ୍ଦଶୀ ରାତ୍ରରେ ଏକନିଷ୍ଠ ଭଗବଦ୍ ଭକ୍ତ ବ୍ୟାଧର କର୍ମବନ୍ଧନ ଫିଟିଥିଲା, କିନ୍ତୁ ସେହି ଭକ୍ତ ଚୂଡ଼ାମଣିଙ୍କ ପୁଣ୍ୟସ୍ମୃତି ରକ୍ଷାର୍ଥ ଆଜି ହିନ୍ଦୁଜାତି ଶିବରାତ୍ରୀ ପାଳନ କରିଥାଏ । ସେ ଏକାଗ୍ରତା ଏକନିଷ୍ଠା କିନ୍ତୁ ଏ ଦେଶରୁ ଅନ୍ତର୍ହିତ ହୋଇଅଛି । ଈଶ୍ୱର ଆଶୀର୍ବାଦ କରନ୍ତୁ ବ୍ୟାଧ ପରି ଓଡ଼ିଆ ଜାତି ଏକାଗ୍ର ଓ ଅକପଟ ହୃଦୟ ହୋଇ କର୍ମକ୍ଷେତ୍ରରେ ଅଗ୍ରସର ହୁଅନ୍ତୁ ।

(ଉତ୍କଳସେବକ- ୩/୨୩ : ତା ୯-୩-୧୯୧୬)

## ପରିଶିଷ୍ଟ-(୫)

ହୁମା-ଦେ.ବି-ଗଞ୍ଜାମର ଗୋଟିଏ କ୍ଷୁଦ୍ର ଜମିଦାରୀ ଓ ନଗରର ନାମ ।

Huma–Name of a small Zamindary and town in Ganjam

୨ । ସମ୍ବଲପୁର ସହରଠାରୁ ଆଠକ୍ରୋଶ ଦୂରରେ ଅବସ୍ଥିତ ଓ ପ୍ରସିଦ୍ଧ ଶିବ ଲିଙ୍ଗଙ୍କ ମନ୍ଦିର ବିଶିଷ୍ଟ ଗ୍ରାମ –

2. Name of a Village, 15 miles from Sambalpur.

[ ଦ୍ର.- ଏ ଗ୍ରାମ ଧମା ଥାନାର ଇଲାକାରେ; ଏଠାରେ ମହାନଦୀ କୂଳକୁ ଲାଗି ଗୋଟିଏ ପ୍ରସିଦ୍ଧ ଶିବ ମନ୍ଦିର ଅଛି । ଏ ମନ୍ଦିରର ଗମ୍ଭୀରା ଗୋଟିଏ ଭୂଗର୍ଭସ୍ଥ ସୁଡ଼ଙ୍ଗ ଦ୍ୱାରା ମହାନଦୀ ସଙ୍ଗେ ସଂପୃକ୍ତ ଓ ସେହିବାଟେ ମହାନଦୀ ପାଣି ଗମ୍ଭୀରା ଭିତରକୁ ଯିବା ଆସିବା କରେ ଓ ଦେଉଳରୁ ପାଦୁକାପାଣି, ଫୁଲ, ବେଲପତ୍ରୀ ନଈକୁ ବହିଆସେ । ଉକ୍ତ ମନ୍ଦିରର ସୁଡ଼ଙ୍ଗ ସଂଲଗ୍ନ ମହାନଦୀରେ ଗୋଟିଏ ଗଣ୍ଡ (ସୁଗଭୀର ଜଳ) ଅଛି । ସେ ଗଣ୍ଡରେ ବଡ଼ ବଡ଼ ମାଛ ଓ କଇଁଛ (କୂର୍ମ) ଅଛନ୍ତି । ଯାତ୍ରୀମାନେ କୂଳରେ ଥାଇ ପାଣିକୁ ମିଠାଇ, ଖଇ ଆଦି ପକାଇଲେ ମାଛ ଓ କୂର୍ମମାନେ କୂଳ ନିକଟକୁ ଆସି ସେମାନେ ଖାଆନ୍ତି । ମନ୍ଦିରର ଅନତିଦୂରରେ ହୁମା ଗ୍ରାମ ଅବସ୍ଥିତ । ଏ ଶିବଲିଙ୍ଗ ପାତାଳଫୁଟା ବା ପାତାଳୀ ଲିଙ୍ଗ ଅଟନ୍ତି । ]

(ପୂର୍ଣ୍ଣଚନ୍ଦ୍ର ଭାଷାକୋଷ(ସଂ) ଗୋପାଳଚନ୍ଦ୍ର ପ୍ରହରାଜ
୭ମ ଖଣ୍ଡ-ପୃ. ୯୧୮୫, ପୁନର୍ମୁଦ୍ରଣ-୨୦୧୧
ଲାର୍କବୁକ୍‌ସ, ଭୁବନେଶ୍ୱର ।

## ପରିଶିଷ୍ଟ-(୬)

**Huma :**

A village in the Sambalpur sub-division. Situated on the left bank of the Mahanadi, 14 miles (23kms.) South of Sambalpur. The Village contains the Leaning temple dedicated to Siva, Which was built in the reign of Baliar Singh, the fifth Raja of Sambalpur. The Worship of Siva is said to have been initiated by a Milk man (Gauda), who daily crossed the Mahanadi to a place on the bank where the under lying rock croped out. Here he daily offered his dole of milk. Which was at once drunk up by the rock, and this miraculous circumstance led to enquiries, which ended in the construction of the present temple. Huma is a place of Pilgrimage, and is also visited by strangers out of curiosity to see the different kinds of fish in the river. They are said to be so tame that they will eat sweet eats from the hands of those who bathe close to the temple. The temple has and endowment consisting of Huma and 6 other villages, which have been exempted from assessment so long as the temple stands and the religious ceremonies are maintained. The grant is an old one, said to date back to the time of Balaram Dev, the first Raja of Sambalpur.

The place is connected by road. A great fair takes place at the foothill in march every year on the occassion of Sivaratri. The Presiding diety is Bimaleswar Siva, whom a large number of people worship on the auspicious day of Sivaratri.

(Samabalpur District Gazetter, 1972)

(ସଂ.) ନୀଳମଣି ସେନାପତି,
ଡ. ନବୀନ କୁମାର ସାହୁ

## ସହାୟକ ଉପାଦାନ ପଞ୍ଜିକା:–


ପୁସ୍ତକ ଓ ବିକ୍ଷପ୍ତି ରଚନା–(ଓଡ଼ିଆ)

| | | |
|---|---|---|
| ଆଚାର୍ଯ୍ୟ, ପ୍ୟାରୀମୋହନ | ୨୦୦୯ : | ଓଡ଼ିଶାର ଇତିହାସ – (ନୂତନ ମୁଦ୍ରଣ) |
| | (୧୮୭୯) | ଓଡ଼ିଶାବୁକ୍‌ଷ୍ଟୋର୍, କଟକ–୨ |
| ତ୍ରିପାଠୀ, ଶିବପ୍ରସାଦ | (୧୯୮୧) | ବିମଳେଶ୍ୱର<br>ଓଡ଼ିଶାର ଦେବଦେବୀ,<br>ଓଡ଼ିଶା ବୁକ୍‌ଷ୍ଟୋର୍, କଟକ–୨ |
| ଦାନୀ, ପୂର୍ଣ୍ଣାନନ୍ଦ | (୧୯୭୮) | ବ୍ରଜ ମୋହନଙ୍କ ଗଦ୍ୟରଚନା : ହୁମାଯାତ୍ରା<br>ସପ୍ତର୍ଷି ୭/୧୧, ନଭେମ୍ବର ୧୯୭୮, ସମ୍ବଲପୁର |
| ଦାଶ, ଶିବ ପ୍ରସାଦ | ୧୯୬୨ : | ସମ୍ବଲପୁର ଇତିହାସ<br>ବିଶ୍ୱଭାରତୀ ପ୍ରେସ୍, ସମ୍ବଲପୁର |
| ଦାଶ, (କବିଭୂଷଣ) ସ୍ୱପ୍ନେଶ୍ୱର | ୧୯୨୩ : | ସମ୍ବଲ ମନସା<br>ସାଧନାପ୍ରେସ୍, ସମ୍ବଲପୁର<br>ପ୍ରକାଶକ : ସୋନପୁର ଦରବାର । |
| | ୧୯୫୮ : | ଚୌହାଣ ବୀରସୁରେନ୍ଦ୍ର ସାଏ<br>ନବଜୀବନ ପ୍ରେସ୍, କଟକ । |
| | ୧୯୬୩ : | ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ<br>ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର |
| ନାଏକ, ସୁଦାମ | ୨୦୧୧ : | ସୁବର୍ଣ୍ଣପୁର ଇତିହାସ<br>ରାଜ୍ୟ ସଂସ୍କୃତି ଓ ପର୍ଯ୍ୟଟନ ବିଭାଗ<br>ଓଡ଼ିଶା, ଭୁବନେଶ୍ୱର |
| ପଣ୍ଡା, ବ୍ରଜମୋହନ | ୧୯୧୧ : | ହୁମାଯାତ୍ରା<br>ମୁକୁର, ଷଷ୍ଠଭାଗ, ୪ର୍ଥ ସଂଖ୍ୟା – ଜୁଲାଇ<br>୧୯୧୧, କଟକ |
| | ୧୯୬୨ : | ଯୌବନ ଗାଥା<br>ସମ୍ବଲପୁର |
| ପ୍ରହରାଜ, ଗୋପାଳଚନ୍ଦ୍ର | ୨୦୧୧ : | ପୂର୍ଣ୍ଣଚନ୍ଦ୍ର ଭାଷାକୋଷ–୭ମ ଖଣ୍ଡ<br>ଲାର୍କ୍ ବୁକସ୍, ଭୁବନେଶ୍ୱର |
| ମହାନ୍ତି, ବିଷ୍ଣୁଚରଣ | ୨୦୦୬ : | ସ୍ମୃତିବାସୀ<br>ପଶ୍ଚିମଓଡ଼ିଶା ବିକାଶ ପରିଷଦ, ଭୁବନେଶ୍ୱର |
| ମିଶ୍ର, କୃପାସିନ୍ଧୁ | ୧୯୨୬ : | ଉତ୍କଳ ଇତିହାସ<br>କଟକ ଟ୍ରେଡିଂ କମ୍ପାନୀ, କଟକ |

| | | |
|---|---|---|
| | ୨୦୧୦ : | ପଣ୍ଡିତ କୃପାସିନ୍ଧୁ ମିଶ୍ର ରଚନାବଳୀ<br>(ସଂ) ଡ. ପ୍ରସନ୍ନ କୁମାର ସ୍ୱାଇଁ<br>ବିଦ୍ୟାପୁରୀ, କଟକ-୨ |
| ମିଶ୍ର, ନାରାୟଣ ପ୍ରସାଦ | ୧୯୨୭ : | ହୁମା |
| | ୧୯୨୮ : | ଉତ୍କଳ ସାହିତ୍ୟ (୧୩୩୫) ୩୧/୯-୧୦ :<br>ପୌଷ, ମାଘ<br>ଡିସେମ୍ବର ୧୯୨୭, ଜାନୁୟାରୀ ୧୯୨୮ |
| ମେହେର, ଗଙ୍ଗାଧର | ୧୯୧୨ : | କବିତା-କଲ୍ଲୋଳ<br>ଉତ୍କଳପ୍ରେସ୍, କଲିକତା |
| | ୧୯୬୮ : | ଗଙ୍ଗାଧର ଗ୍ରନ୍ଥାବଳୀ<br>ଦାସବ୍ରଦର୍ସ, କଟକ |
| ମେହେର, ରଘୁନାଥ | ୨୦୧୨ : | ପଶ୍ଚିମ ଓଡ଼ିଶାର ଶୈବ ସଂସ୍କୃତି<br>ଏଥେନା ବୁକ୍ସ, ଭୁବନେଶ୍ୱର |
| ଶେଠ, ଖଗେଶ୍ୱର | ୧୯୬୩ : | ଖଗେଶ୍ୱର ଗ୍ରନ୍ଥାବଳୀ-(ପ୍ରଥମଭାଗ)<br>ଖଗେଶ୍ୱର ଶେଠ, ସମ୍ବଲପୁର |
| ଶେଠ, ରାଧାକାନ୍ତ | ୨୦୦୯ : | ଶୈବପୀଠ-ହୁମାର ବକ୍ରମନ୍ଦିର |
| | (୨୦୦୨) : | ସମ୍ବଲପୁର |
| ସାହୁ, ନବୀନ କୁମାର | ୧୯୭୨ : | ବୁଢ଼ାରଜା ପାହାଡ଼<br>ସପ୍ତର୍ଷି ୧/୭, ଜୁଲାଇ ୧୯୭୨, ସମ୍ବଲପୁର |
| ସାହୁ, ଯଜ୍ଞ କୁମାର୍ | ୧୯୭୬ : | ରାଣୀପୁରଝରିଆଲ ଓ ସିଦ୍ଧାଚାର୍ଯ୍ୟ ଗଗନଶିବ<br>ସପ୍ତର୍ଷି ୫/୭, ଜୁଲାଇ ୧୯୭୬, ସମ୍ବଲପୁର |
| | ୨୦୦୧ : | ଓଡ଼ିଶାର ସାଂସ୍କୃତିକ ଇତିହାସ<br>ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର |
| | ୨୦୦୩ : | ଜଗନ୍ନାଥଙ୍କ ଆଦି-ପୀଠ ପଶ୍ଚିମ ଓଡ଼ିଶାରେ<br>ପ୍ରକାଶିକା : ତତ୍ତ୍ୱମସି ସାହୁ, ବରପାଲି |
| | ୨୦୦୬ : | ସମୟର ଚକ<br>ପ୍ରକାଶକ: ଶ୍ରୀ ବିନୋଦାନନ୍ଦ ସାହୁ, ବରପାଲି |


□ □ □

| | | |
|---|---|---|
| | ୨୦୧୦ : | ପଣ୍ଡିତ କୃପାସିନ୍ଧୁ ମିଶ୍ର ରଚନାବଳୀ<br>(ସଂ) ଡ. ପ୍ରସନ୍ନ କୁମାର ସ୍ୱାଇଁ<br>ବିଦ୍ୟାପୁରୀ, କଟକ-୨ |
| ମିଶ୍ର, ନାରାୟଣ ପ୍ରସାଦ | ୧୯୨୭ : | ହୁମା |
| | ୧୯୨୮ : | ଉତ୍କଳ ସାହିତ୍ୟ (୧୩୩୫) ୩୧/୯-୧୦ :<br>ପୌଷ, ମାଘ<br>ଡିସେମ୍ବର ୧୯୨୭, ଜାନୁୟାରୀ ୧୯୨୮ |
| ମେହେର, ଗଙ୍ଗାଧର | ୧୯୧୨ : | କବିତା-କଲ୍ଲୋଳ<br>ଉତ୍କଳପ୍ରେସ୍, କଲିକତା |
| | ୧୯୬୮ : | ଗଙ୍ଗାଧର ଗ୍ରନ୍ଥାବଳୀ<br>ଦାସବ୍ରଦର୍ସ, କଟକ |
| ମେହେର, ରଘୁନାଥ | ୨୦୧୨ : | ପଶ୍ଚିମ ଓଡ଼ିଶାର ଶୈବ ସଂସ୍କୃତି<br>ଏଥେନା ବୁକ୍ସ, ଭୁବନେଶ୍ୱର |
| ଶେଠ, ଖଗେଶ୍ୱର | ୧୯୭୩ : | ଖଗେଶ୍ୱର ଗ୍ରନ୍ଥାବଳୀ-(ପ୍ରଥମଭାଗ)<br>ଖଗେଶ୍ୱର ଶେଠ, ସମ୍ବଲପୁର |
| ଶେଠ, ରାଧାକାନ୍ତ | ୨୦୦୯ :<br>(୨୦୦୨) : | ଶୈବପୀଠ-ହୁମାର ବକ୍ରମନ୍ଦିର<br>ସମ୍ବଲପୁର |
| ସାହୁ, ନବୀନ କୁମାର | ୧୯୭୨ : | ବୁଢ଼ାରଜା ପାହାଡ଼<br>ସପ୍ତର୍ଷି ୧/୭, ଜୁଲାଇ ୧୯୭୨, ସମ୍ବଲପୁର |
| ସାହୁ, ଯଜ୍ଞ କୁମାର୍ | ୧୯୭୬ : | ରାଣୀପୁରଝରିଆଲ ଓ ସିଦ୍ଧାଚାର୍ଯ୍ୟ ଗଗନଶିବ<br>ସପ୍ତର୍ଷି ୫/୭, ଜୁଲାଇ ୧୯୭୬, ସମ୍ବଲପୁର |
| | ୨୦୦୧ : | ଓଡ଼ିଶାର ସାଂସ୍କୃତିକ ଇତିହାସ<br>ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର |
| | ୨୦୦୩ : | ଜଗନ୍ନାଥଙ୍କ ଆଦି-ପୀଠ ପଶ୍ଚିମ ଓଡ଼ିଶାରେ<br>ପ୍ରକାଶିକା : ତତ୍ତ୍ୱମସି ସାହୁ, ବରପାଲି |
| | ୨୦୦୬ : | ସମୟର ଚକ<br>ପ୍ରକାଶକ: ଶ୍ରୀ ବିନୋଦାନନ୍ଦ ସାହୁ, ବରପାଲି |


□ □ □

